

କବି କୁଳମଣି ଜେନାଙ୍କୁ ବହୁତ କମ ଲୋକ ଜାଣନ୍ତି। ତାଙ୍କ ସହ ବା ତାଙ୍କ ଲେଖା ସହ ପରିଚିତ ହେବା ଅର୍ଥ ନୂତନ ଦିଗରେ ନିଜକୁ ପରିଚାଳିତ କରିବା; ନୂଆ ପ୍ରତ୍ୟୟଟିଏ ଗଢ଼ୁରାଇବା।

ଦେହର ସ୍ୱାଧୀନତାଠାରୁ ଆରମ୍ଭ କରି ଶ୍ରମ ପ୍ରକ୍ରିୟାରେ ମଣିଷର ମୁକ୍ତି- ଦଳିତ, ସର୍ବହରା, ଲେସ୍‌ବିଆନ୍ ସମସ୍ତଙ୍କ ପାଇଁ ସେ ଆଶାର ଝଲକ। ମୁକ୍ତିର ଏକ ନିଶାଣ ସଦୃଶ କବି କୁଳମଣି ଜେନାଙ୍କ କବିତା। ଜ୍ଞାନ ଜଗତରେ ସେ ଏକ ତାରକା। ଉଭୟ ପ୍ରକୃତି ବିଜ୍ଞାନ ଓ ସମାଜ ବିଜ୍ଞାନ କ୍ଷେତ୍ରରେ ତାଙ୍କର ଗଭୀର ପ୍ରବେଶ। ମାର୍କସବାଦ ଓ ଉତ୍ତର ଆଧୁନିକତାବାଦକୁ ସେ ତନ୍ନ ତନ୍ନ କରି ଅଧ୍ୟୟନ କରିଛନ୍ତି। ପୁଞ୍ଜି ଓ ଶ୍ରମର ସମ୍ପର୍କ, ନାରୀ ମୁକ୍ତି, ଯୌନତା ଇତ୍ୟାଦି ବହୁ ଜଟିଳ ବିଷୟର ସେ ଜଣେ ସଫଳ ବ୍ୟାଖ୍ୟାକାର। କବିତା ରଚନା ସହ ଦାର୍ଶନିକ ଚିନ୍ତା ଭାବନା ତାଙ୍କ କାବ୍ୟ ବ୍ୟକ୍ତିତ୍ୱର ଅନ୍ୟତମ ବୈଶିଷ୍ଟ୍ୟ।

- ବିନୋଦ

# ଧୂସର ସବୁଜ

କୁଳମଣି ଜେନା



ବୁକ୍ ମୁଭମେଣ୍ଟ
ଭୁବନେଶ୍ୱର

ଧୂସର ସବୁଜ

କୁଳମଣି ଜେନା

ପ୍ରକାଶକ : ବୁକ୍ ମୁଭମେଣ୍ଟ
୨୮୫, କଟକ ରୋଡ୍, ଭୁବନେଶ୍ୱର-୭୫୧୦୦୬
ମୋ: ୮୦୯୩୯୩୭୭୪୮

ପ୍ରଥମ ପ୍ରକାଶ : ଜୁଲାଇ, ୨୦୧୫

ମୂଲ୍ୟ : ₹୬୦/-

---

**DHUSARA SABUJA**

by

**Kulamani Jena**

Published by : Book Movement
285, Cuttack Road, Bhubaneswar-751006
Cover Design : Sushil Pohan
Printed at : Vishwamukti Publication, Bhubaneswar
First Edition : July, 2015
Price : ₹ 60/-

# ଉତ୍ସର୍ଗ

ଯାହାଙ୍କର ସ୍ନେହ ଓ ଭଲପାଇବାର ଫଳଶ୍ରୁତି

ଏହି କାବ୍ୟଗ୍ରନ୍ଥର 'ଜାଣେ ମୁଇଁ ଜାଣେ' ଓ 'କଲମ୍ବସ୍ ଭାବନା' ଭଳି

କାଳଜୟୀ କବିତା

ସେଇ ସ୍ନେହାସ୍ପଦାଙ୍କ କରକମଳରେ...

- କବି

# ସୂଚୀପତ୍ର

# କଲମ୍ବସ୍ ଭାବନା

ମୋର ଏଇ କବିତାର ଧାଡି
ପଢ଼ିବକି ପଢ଼ିବନି ଜାଣେନା ମୁଁ
ଯିବି ଦିନେ ମରି,
କ୍ଲାଂତିହୀନ ନାବିକ ମୁଁ
ପୃଥିବୀର ସମସ୍ତ ଜଂଜାଳ
କାଟି ଚାଲିଯିବି ବୋଲି ଭାବିଥିଲି
ଜୀବନର କେଉଁ ମାୟାଜାଲ
କବଳିତ କଲା ମୋ'ର ପ୍ରାଣସତ୍ତା
ପ୍ରେମରେ ଆକୁଳ-
ହେଲା କାହା ପାଇଁ
ଅଥଳ ଦରିଆ ବୁକେ, ନାବିକ ମୁଁ
ଦିଗହରା ହୋଇ
ଖୋଜିଲି ଆଶ୍ରୟ
କୋମଳ ହାତର ସ୍ପର୍ଶ
ଦ୍ୱୀପାନ୍ୱିତ ସବୁଜିମା-ମୟ
ସାଫଲ୍ୟର ଶୁଭ୍ର ସାର୍ଥକତା
ସବୁ କିଂତୁ ବ୍ୟର୍ଥ ହେଲା
ନାବିକର ଲକ୍ଷ୍ୟଭ୍ରଷ୍ଟ ଚିଂତା ।

ଯାତ୍ରାରଂଭ କରିଥିଲି
ଆଟଲାଂଟିକ ଉପକୂଳୁ
ଉତ୍ତମାଶା ଅଂତରୀପ ଆଡ଼େ
ପହଂଚିଲି ପ୍ରଶାଂତ ସାଗରେ
ନଥିଲା ଯା ଲକ୍ଷ୍ୟ ସ୍ଥଳ ମୋର
ତଥାପି ସେ ବିଡଂବିତ ବିଜୟକୁ
ବାଧହୋଇ କଲି ମୁଁ ସ୍ୱୀକାର ।
ଗତିଶୀଳ- ଜୀବନର
କ୍ଲାଂତି ଆଉ ବ୍ୟର୍ଥତାକୁ ଘେନି
ପ୍ରାପ୍ତିର ପୌରୁଷ ମୋର
କରିଥିଲା ଭବିଷ୍ୟତ ବାଣୀ
ଜୀବନର ଲକ୍ଷ୍ୟସ୍ଥଳେ ପହଂଚିବା
ନିଶ୍ଚିତ ସଂଭବ
ପଥଭ୍ରଷ୍ଟ ହୋଇପୁଣି
ଜୀବନର ଅଂତିମ ଗୌରବ ଅଣାଯାଇପାରେ
ନାବିକ ଯେ ମରେ ନାହିଁ
ଜୀବନର ଗତିମୟ ଝଡେ ।

ସାଫଲ୍ୟ ଯେତିକି ସତ୍ୟ
ବ୍ୟର୍ଥତାଯେ ତତୋଧିକ ସତ୍ୟ

ତମକୁ ପାଇବା ଆଉ ହରାଇବା
ସବୁର ମହତ୍ୱ
ଅଛି ଏଠି ଯେଣୁ,
ସତେଜ ଏ ଦେହସତ୍ତା
ଲହରିତ ହୃଦୟର ବେଣୁ
ପ୍ରାଣବଂତ କବିତା ଉଦ୍ୟାନ
ଅଧିକ ଘନିଷ୍ଠ ଭାବେ
ମୋ ସତ୍ତାକୁ କରେ ମୋହାଚ୍ଛନ୍ନ;
ସେ ଉଦ୍ୟାନ-ବିହାରର ଫଳଶ୍ରୁତି
କବିତାର ଶବ୍ଦ ଦୁଇ ଧାଡି
ପଢିବକି ପଢିବନି
ଜାଣେନା ମୁଁ ଯିବି ଦିନେ ମରି;
ତଥାପି ମୋ ବଂଚିବାର ଶ୍ରମ ସାର୍ଥକତା
ଶରାହତ ହେବାର ବ୍ୟର୍ଥତା
ସବୁକିଛି ସମର୍ପୁଛି
ଅକ୍ଷରକୁ ଅକ୍ଷରରେ ଜୋଡି
ମୋର ଏଇ କବିତାର ଧାଡି
ପଢିବକି ପଢିବନି ଜାଣେନା ମୁଁ
ଯିବି ଦିନେ ମରି ।



# ଜାଣେ ମୁଇଁ ଜାଣେ

ଜାଣେ ମୁଇଁ ଜାଣେ
ତମ ନିରବତା ଯେଣୁ
ଶିଖାଇଛି ପୃଥିବୀର ମାନେ
ଖୋଜିବାକୁ ଜୀବନର ଅର୍ଥ
ତମର ପ୍ରତିକ୍ଷା ଆଉ ପ୍ରତାରଣା
ବଂଚିବା ଓ ମରିବାର ସର୍ତ
ସବୁଥିଲା ଦେହର ନାଟିକା
ଯାହାକୁ ନବୁଝି ଦିନେ କରିଥିଲି
ତମ ପ୍ରୀତି ଭିକ୍ଷା ।
ସବୁତ ମିଳାଇଗଲା
ଶତାବ୍ଦୀର ସ୍ଥିର ଗଭୀରତା
ମଧ୍ୟ ଯାହା ଅବଶେଷ
ତମଠାରୁ ମୋର ବିଚ୍ଛିନ୍ନତା
ସ୍ମୃତି ଆଣେ କେବଳ ଯେ ସ୍ମୃତି
ତମକୁ ହରାଇବାରେ
ଭାବିଥିଲି ଜୀବନର ଗତି
ବଂଦ ହୋଇଯିବ;
ହେଲା ନାହିଁ ଯେଣୁ

ଏବେ କିଂତୁ ନୀଡହରା ପକ୍ଷୀ ମୁଁ ଯେ
ଖୋଜେ ଏଣୁ ତେଣୁ
କିଛିଇତ ମିଳେନାହିଁ
ମିଳେ ଯାହା ସୁଦୂର ଅତୀତ
ଯେଉଁଠି ତମକୁ ନେଇ ଗାଇଥିଲି
ବଂଚିବାର ଗୀତ
ଗଛେ, ଡାଳେ, ପବନେ, ପତରେ
ଆକାଶେ ଓ ମେଘେ
ଜଳବାୟୁ ଉତ୍ତାପର ସମ୍ମିଳିତ ବେଗେ
ଚିନ୍ମୟ ଆନନ୍ଦେ ।
ସେଇ ଧ୍ୱନୀ ସେଇ ଛଂଦ
କରିଥିଲା ଦିନେ ଆତ୍ମହରା
ବ୍ୟଥା ଭରା ହୃଦୟରେ
ଭାବିଥିଲି ବିରହ ବିଧୂରା
ଧ୍ରୁବଭଳି ସତ୍ୟ ଯାହା ମଣିଥିଲି
ଇଂନ୍ଦ୍ରଧନୁ ପରି ସେ ସଂପର୍କ
କେଉଁଠି ମିଳାଇ ଗଲା
ଆଜି ଦେଖେ ଆକାଶ ନିର୍ମୋକ ।
ପରିଛିନ୍ନ ପୃଥିବୀର ହୃଦୟର
ଯେତେ ଆକୁଳତା

କେଉଁଠି ମିଳାଇଗଲା
ଛିଡିଗଲା ଲଟାଇର ସୂତା
ହଜିଗଲା ସମୟର ପାଣିଧାରେ
ମେଘ ଆଉ ବୁନ୍ଦ୍ ବୁନ୍ଦ୍ ପରାଏ
ସଂପର୍କ ଏମିତି କ'ଣ
ସହଜରେ ଶୂନ୍ୟ ହୋଇଯାଏ ।
ଆଜି ତା ଅତୀତ ଯେଣୁ
ବର୍ତ୍ତମାନ ରଚେ ବସି
ଜୀବନର ବାସ୍ତବ ଖସଡା
ଆବେଗରମାନେ ଯଦି ଥାଏ କିଛି
କବିତାର ଅମରତ୍ୱ ଛତା
ତମସହ ସଂପର୍କର ଫଳଶ୍ରୁତି
କିଛି ନାହିଁ ଏଇ ଦୁନିଆରେ
କୌଣସି ପ୍ରେମ ଯେ ବ୍ୟର୍ଥହୁଏ ନାହିଁ
ପ୍ରତାରଣା ପରେ ।
ଏଇତକ ସତ୍ୟ ଯେଣୁ
ସଂଚୟ ମୋ ବାକି ଜୀବନର
ତମ ବିରହର ଅଶ୍ରୁ
ଅମରତ୍ୱ ଆଣୁ କବିତାର ।



## ପ୍ରଥମ ସଂଗ୍ରାମ ପ୍ରଥମ ସୋପାନ ନାରୀ ମୁକ୍ତିର

ପରିବାର ଏକ ବଂଶବୃକ୍ଷ
ନାରୀ ! ବଂଶବିସ୍ତାର-କାରିଣୀ କାୟା
ପୁରୁଷ ପ୍ରାପ୍ତିର ମାୟା
ସଂତାନ-କାମୀତା
ନାରୀ ମନର ଦୁର୍ବଳତା ।

ନିଛକ ଡିଂବାଣୁ
ଅବଳା ଦୁର୍ବଳା
'ଆହା ବିଚାରା !'
ପୁରୁଷର କଷଟିରେ ।

ପ୍ରଗତିର ରଥଚକ ଛିନ୍ନଭିନ୍ନ ହୁଏ
ସୂର୍ଯ୍ୟକୁ ଢାଂକି ଦିଏ ମେଘର ପଟଳି
ସ୍ୱପ୍ନକୁ ଢାଂକିଦିଏ ରଢ଼ୀ ।

ନାରୀର ସ୍ଥିତି
ନିରବ ଚିରକାଳ
ନିରବ କ୍ରାଂତି ।

ଦ୍ରୋହ ଦୁନିଆରେ
ପ୍ରତିବାଦର ପ୍ରଥମ ପାହାଚରେ

ନାରୀ ! ଫିଂଗି ଦେଉ ପାଦରୁ ଘୁଂଗୁର
କାନରୁ କାନଫୁଲ,
ନାକରୁ ଗୁଣା
ବେକରୁ ସୁନାହାର
ପୋଡିଦେଇ ପୋଥି ମନୁସ୍ମୃତିର
ଦୋହା ତୁଳସୀର ।
ପୁରୁଷ ହେଉ ପରାଜିତ
ଅଧିନସ୍ଥ କରିବାର ଇଚ୍ଛାରୁ ବିରତ
ବିଜେତା ହେଉ ବିଜିତ ।

ଲିଂଗଭେଦର ଦୁନିଆରେ
ନାରୀ ପାଇଁ ବଂଧନ ବିମୁକ୍ତ ଜୀବନ
ମୁକ୍ତି ମଳୟର ପ୍ରଥମ ଶିହରଣ;
ନିଛକ ଜରାୟୁ ବୋଲି ସଂବୋଧିତା ଯିଏ
ତା'ପାଇଁ ଛୋଟ ବଡ ଭେଦର
ହେଉ ଅବସାନ
ତାହା ହିଁ ହେବ ପୁରୁଷ-ତାଂତ୍ରିକ ଦୁନିଆରେ
ନାରୀ ମୁକ୍ତିର ପ୍ରଥମ ସୋପାନ
ପ୍ରଥମ ସଂଗ୍ରାମ
ମାନବ ମୁକ୍ତିର ।



# ତୁମକୁ

ତୁମକୁ ମୁଁ ଭଲପାଇ
ପୃଥିବୀକୁ ଭଲପାଇଗଲି
ତୁମର ପ୍ରଣୟ ଦୀପେ
ପୃଥିବୀ ପୂଜାର୍ଘ ବାଢ଼ିଲି ।
ପଚାରିଲି
ହେ ଧରିତ୍ରୀ ମାତା
ଯାହା ମୋର ଚିର ଅଭିଳାଷ
ଦେଇ ମୋତେ ମୁଗ୍ଧ କର
ମୁଗ୍ଧ କର ପୃଥିବୀ ପ୍ରବାସ ।
ଆଉ କିଛି ମାଗୁନାହିଁ
ତମଠାରେ
ଏଇ ପୃଥିବୀରେ
ଭଲପାଏ ଯା'ରେ
ତାର ସ୍ନିଗ୍ଧ ହସଟିକେ
ଫୁଟିଉଠୁ ତୁମରି ଅଧରେ ।



# ଜୀବନ ଜିଜ୍ଞାସା

ନୂଆ ମଣିଷଟିଏ ମୁଁ ଦେଖିବାକୁ ଚାହେଁ
ତମ ଭିତରେ
ଯିଏ ବାସ୍ତବତାକୁ ସାମ୍ନା କରିବ
ସ୍ୱପ୍ନରେ ନୁହଁ, କବିତାରେ ନୁହଁ
ବାସ୍ତବ ଜୀବନ ସଂଗ୍ରାମରେ ।
ମଧୁଶାଳାରେ ମଧୁନଥାଏ
ମଧୁଥାଏ ମୃତ୍ୟୁକୁ ସାମ୍ନା କରିବାରେ
ସମର ପ୍ରାଂଗଣରେ
ଜୀବନର ଜଟିଳ ଅନୁଭବରେ ।

କବିତା କାହାକୁ ମୁକ୍ତି ଦିଏନା
ମୁକ୍ତିର ପ୍ରୟାସ
ରୂପାଂତରିତ ହୁଏ କବିତାରେ;
ସଂଘର୍ଷ ଆଣି ଦିଏ ସ୍ୱପ୍ନ
ଏକାଂତ ଭାବରେ ଯୋଡି ହୋଇଯିବା
ଓ ଜଡାଇ ଧରିବାରୁ ଜନ୍ମନିଏ ପ୍ରେମ ।
ପ୍ରେମ ଏକ ଜଟିଳ ଶୃଂଗାର
ଯେଉଁଠି ମଣିଷ ବିକାରହୀନ
ନିର୍ଭୟ, ନିର୍ବିକାର ।

ତମ ଚତୁଃପାର୍ଶ୍ୱର ଦୁନିଆ
କାପୁରୁଷମାନଂକ ଦ୍ୱାରା ବେଷ୍ଟିତ
ଯେଉଁମାନେ ନିଜେ ଭୟାଳୁ ବୋଲି
ଅନ୍ୟକୁ ଭୟ ଦେଖାଂତି
ଚୌକାଠରେ ଚିରକାଳ
ବଂଦୀ ହୋଇ ରହିବାର
ଦସ୍ତାନା ବାଂଟଂତି ।

ଏ ଦୁନିଆ ପୁରୋହିତମାନଂକର ନୁହେଁ
ରାଜା, ଜମିଦାର, ପୁଂଜିପତି
ବଡବ୍ୟବସାୟୀ, କଂଟ୍ରାକ୍‌ଟର
ବଡ ଅଫିସର, ବଡ ବଡ ବାବୁମାନଂକର ନୁହଁ
ଏଠି ଶ୍ରମିକ ଓ କିରାଣୀର ବି ଅଛି
ସ୍ୱପ୍ନ ଦେଖିବାର ସ୍ୱାଧୀନତା
ସତ୍ୟକୁ ସାମ୍‌ନା କରିବାର ସାହସିକତା ।

ପୁଂଜି ଓ ପୁରୋହିତମାନଂକ କବଳରୁ
ଦେଶ ଓ ସମାଜକୁ ମୁକ୍ତ କରିବା ପାଇଁ
ଜଣେ ବୁଦ୍ଧିଜୀବୀ ଚାହିଁପାରେ
ଅଭିବ୍ୟକ୍ତିର ସ୍ୱାଧୀନତା
ନାଗରିକର ଆବଶ୍ୟକ ବିପ୍ଳବ ମନସ୍କତା
ଜଣେ ନାରୀ ଚାହିଁପାରେ ମୁକ୍ତ ସ୍ୱଚ୍ଛଂଦ
ଭାବ ବିହ୍ୱଳତା ।
ଭାବ ଜଗତରେ ମଣିଷ ଯାହା ଇଚ୍ଛାକରେ
ବାସ୍ତବ ଜଗତରେ ସେ ତାହା ପାଇପାରେ
ଯଦି ତା' ଭାବନାରେ ଅଛି ବାସ୍ତବତା
ପ୍ରକୃତିଦତ୍ତମାନବୀୟ ଗୁଣବତ୍ତା
ଇଚ୍ଛାରେ ଅଛି- ସାମାଜିକ ପ୍ରଗତିର ବାର୍ତ୍ତା ।

ମୋ ପାଇଁ ପ୍ରେମ, ସ୍ୱପ୍ନ, ସ୍ୱାଧୀନତା ଓ ବିପ୍ଳବର
ଗୋଟିଏ ଅର୍ଥ ମୁଁ ଖୋଜିପାଇଛି
ତାହା ହେଉଛି ଏକ ପରିପୂର୍ଣ୍ଣ ଜୀବନ
ଯେଉଁ ଜୀବନ ମାର୍ଫତରେ
ତମକୁ ମୁଁ ମୋ ହୃଦୟ ଭିତରେ ସାଇତି ରଖିଛି
ବଂଧୁ ଭାବରେ, ପ୍ରେମିକା ରୂପରେ
ଅର୍ଦ୍ଧାଂଗିନୀଠାରୁ ଅଧିକତର ଢଂଗରେ
ପରିବର୍ତ୍ତନ, ବିପ୍ଳବ ଓ ସମତା ପାଇଁ
ସଂଗ୍ରାମର ପ୍ରତିଟି ସ୍ତରରେ
ତମକୁ ସାଥୀଟିଏ ହେବା ପାଇଁ
ଆହ୍ୱାନ ଜଣାଇଛି ।
ତମେ ଜାହ୍ନବୀ, ସ୍ରୋତସ୍ୱିନୀ
ଜ୍ୟୋତ୍ସ୍ନାବିଧୌତ ରାତ୍ରିଟିଏ ହୁଅ
ମୁଁ ମାଟି ଉପରେ ପାଦ ଥାପିଥିବା
ଏକ ପାଦପ
ଆକାଶକୁ ଶାଖା ମେଲିଛି
ସୁଖ, ସ୍ୱପ୍ନ, ବାସ୍ତବତା, ସଂଗ୍ରାମ,
ଜୟ ପରାଜୟର ପ୍ରତିଟି ପଦପାତରେ
ତମ ସହ ସଂପର୍କ ରଚୁଛି ।

ଏବେ କବିତା ରଚା ନଯାଉ
ରଚାଯାଉ ବିପ୍ଳବ ପ୍ରେମ ଓ ଶୃଂଗାର
ଜଟୀଳ ଜୀବନ ଜିଜ୍ଞାସାର
ନିଜ ଇଚ୍ଛାରେ ଜୀବନ ଜିଇଁବାର
ଅଧିକାର ଓ ସଂଗ୍ରାମ ଜାହିର କରାଯାଉ
ନିଜକୁ ଓ ନିଜର ସମାଜକୁ
ମୁକ୍ତ କରିବାର...।



# ତମ କବିତା

ତମ କବିତାର ହାତକଡି ଭଳି
ବେଢି ଯାଇଥିବା ଶବ୍ଦମାନଂକୁ
ବିଦାୟ ଦେଇ
ପକ୍ଷୀ ଭଳି ଉଡିଯାଉଥିବା ପବନକୁ
ପ୍ରସାରିତ କଲାବେଳେ
ମୋ ହାତରେ ଅଛାଡି ହୋଇ ପଡୁଛି
ଆଂଜୁଳାଏ ସଂତୋଷ
ଯାହାକୁ ପୁଂଜି କରି
ତମ ଚାରିପଟେ ଘୁରିବାକୁ ଇଚ୍ଛାକଲେ
ପୁଣି ତମର କବିତା ହିଁ
ମନେ ପକାଇ ଦିଏ
ସେଠିତମେ ନାହିଁ
ଯିଏ ଅଛି ତାକୁ ନେଇ
ଘର କରାଯାଏନା
ତା'ହାତରେ କାଚଚୂଡି ପିଂଧାଇ ଦେଲେ
ସେ ବିଧବା ହୋଇଯିବ ।
ତାକୁ ପ୍ରେମ କଲେ
ସେ ଏକୁଟିଆ ଅନୁଭବ କରିବ

ସେ ଖୁଂଟ ନୁହଁ ଗଛଟିଏ
ସବୁଜିମାରେ ସ୍ୱଚ୍ଛ ;
ଲାବଣ୍ୟ ତା'ର ଆକାଶକୁ ସ୍ପର୍ଶ କରେ
ଦୃଷ୍ଟି ତା'ର ସୂର୍ଯ୍ୟର ଆଭା ଉକୁଟାଏ
ହସ ତା'ର ସ୍ୱରସମ ଲହରାଇତ ହୁଏ;
ତାକୁ ନେଇ ସଂସାର କରାଯାଏନା
ସ୍ୱପ୍ନ ଦେଖାଯାଏ
ଶବ୍‌ଦର ଧ୍ୱନୀକୁ ସଂପ୍ରସାରିତ କରେ ସେ
ସୂକ୍ଷ୍ମ ମନମୟତାରେ ତୀର ଭଳି ଛୁଟିଆସି
ଛାତିକୁ ବିଦ୍ଧକରେ ଯାହା ।



# ସଂପର୍କ ଏକ ଭିନ୍ନ ଦିଗଂତର

ରାଜାଝିଅ ତମେ ଏବେ ବି ପୁରୁଣା
କଥାରେ ବଂଦୀ କିଆଁ
ପରଂପରାର ପଚା ନର୍ଦ୍ଦମା ପିଂଗି କି
ପାର ନାହିଁ
ତୁମ ଚାରିପଟେ ନୂତନ ବଇଁଶୀ ସୁରର
ରାଗିଣୀ ତୋଳି
ଅପେକ୍ଷା କରେ ତୁମ ପିରତିରେ ଜୀବନ
ଦେବାର ପାଇଁ ।
ତମ ପିତାମାତା ତମ ପରିବେଶ ତମକୁ
ପଛକୁ ଟାଣେ
ମୁଁ କେଉଁ ଦୁଷ୍ଟଗ୍ରହ ତମ ଘରେ ଯାଇ
ଦେଖିଲି ବଂଦ ଦୁଆର କବାଟ କଣେ
ଚାହିଁ ରହିଛଯେ ହଜାର ବର୍ଷ ତଳୁ
ରାଜଜେମା ମୋର ସର୍ବହରାର ରାଣୀ
ହେବାକୁ ତମର ଇଚ୍ଛା ଥିଲେ ବି
ଭୟ ଲାଗେ ଭୟ ଲାଗେ
କେଜାଣି କିଏବା ପଛରୁ ଧରୁଛି ଟାଣି ;
ଗୋଡରେ ତମର ବେଢି,

ବେକରେ ତମର ଫାଶ
ତମେ ପାଲଟିଛ ପଚା ନର୍ଦ୍ଦମା
ପରଂପରାର ଦାସ ।
ଜାତି, ଯୌତୁକ, ବୈଦିକ ପ୍ରଥା ସହ
ଖୋଜ ଦୂର୍ନୀତି କରେ କେଉଁ ସୁପୁରୁଷ
ସେଇ ପୁରୁଷର ଗଳାରେ ଦେବାକୁ ମାଳା
ଇଚ୍ଛା ତମର ହୁଏନା ଯଦିବା
ପୁଣି ବି ଇଚ୍ଛା ହୁଏ
ପରଂପରାର ରଥଚକ ତଳେ
ଜୀବନ ଦୁଲୁକିଯାଏ ।
ପାରୁନାହଁ ତମେ ଜାଣି
ତମ କଡେ କଡେ ଆମ ସଂସ୍କୃତି
ଚେକୁଅଛି ପୁଣି ମଥା
ସହସା ତାହାକୁ ସ୍ୱୀକାର କର ସହି
ଜୀବନ ପାତ୍ର ଭରି ଦିଅ ହେଲେ କହେ
ଭଗବାନ ନୁହଁ ସର୍ବହରାର ତ୍ରାହି ।



# ବିଶ୍ୱାସ

ତମେ ବିଶ୍ୱାସର ଖୁଂଟଟିଏ ହୁଅ
ମୋ'ର ଏତେ ଯେ ଭଲ ପାଇବା
ତମ ପ୍ରତି
ତମ ଭିତରର କଅଁଳ ଶିଶୁ ସତ୍ତାଟିକୁ
ତମେ ଉଜାଗର କରିଦିଅ ।
ତମେ ମୋର ସ୍ନେହ ଆଦରକୁ
ଆପଣେଇ ନିଅ
ବୀରାଂଗନାଟିଏ ହୁଅ
ଜୀବନ ପାଇଁ ଜୀବନ ଜିଅଁ ।
ତମେ ନର୍ତ୍ତକୀଟିଏ ହୁଅ
ମୁଁ ତମ ପାଦରେ ପିଂଧାଇ ଦେବି ଘୁଂଗୁର
ତମେ ବିପ୍ଳବୀ ନାୟିକାଟିଏ ହୁଅ
ମୁଁ ଧରାଇ ଦେବି ତମ ହାତରେ ବଂଧୁକ
ଜୀବନ ଏକ ରଣକ୍ଷେତ୍ର ।
ହାରି ଯିବାଟାକୁ ମୁଁ ଗ୍ରହଣ କରେନା
ଜିଇଁବାକୁ ହେଲେ ଛିଡିବାଟା
ନିଶ୍ଚିତ ଯେହେତୁ
ମୃତ୍ୟୁକୁ ମୁଁ ସାମ୍ନା କରିବି

ମଣିଷକୁ ହୃଦୟ ଦେଇ
ହୃଦୟବାନ ମଣିଷଟିଏ ହେବି ।
କେଉଁଠି କେତେବେଳେ କିଏ
ତମକୁ ଆଘାତ ଦେଲା
କିଏ କେତେବେଳେ ତମ ହାତ ଉପରୁ
ହାତ ଖସାଇ ନେଲା
କିଛି ଯାଏ ଆସେନା;
ଏକଲା ଚାଲିଶିଖ
ଏକଲାମାନେ ଏକଲା ନୁହଁ
କେହି ତମ ସହିତ ଅଛି ନିଶ୍ଚୟ
ତମେ ହୁଏତ ଜାଣି ପାରୁନାହଁ
ଏଇ ଯେମିତି ମୁଁ ଏକାଂତରେ
ତମର ନିଜର
ତୁମେ ମୋର
ମୁଁ ତମର
ଆମେ ଉଭୟ ଉଭୟଂକର
ଏ ସାରା ସଂସାର ଆମର ।
ଦୁନିଆଟା ପଳାତକମାନଂକ
ପାଇଁ ନୁହଁ;
ହାୟେନାମାନେ ହାୟେନା

ମଣିଷ ଶିକାର କରୁଥିବା
ମଣିଷମାନଂକୁ ହୁସିଆର ।
ହୃଦୟ ଦେଲା ବେଳେ ଓ
ହୃଦୟ ନେଲାବେଳେ
ଗୋଟାପୁଣି ଆମେ ମଣିଷ
ସମୟରେ ଭରିଯାଉ ବିଶ୍ୱାସ
ମୋ ତରଫରୁ ମୁଁ କିଛି ଭୁଲ୍
ହେବାକୁ ଦେବିନି
ତମେ କଥାଦିଅ
ଅତୀତକୁ ପଛରେ ପକାଇ
ସମସ୍ତ ଦୁଃସ୍ୱପ୍ନ ମାନଂକୁ ଭୁଲିଯାଇ
ତୁମେ ସ୍ୱପ୍ନମୟ କରି
ଗଢ଼ି ତୋଳିବ ବର୍ତ୍ତମାନକୁ
ତେବେଯାଇ ଜୀବନ ସୁଂଦର ହେବ
ସୁଖ ଓ ଆନଂଦରେ
ଭରିଯିବ ସମୟ ।



# ହେ’ ପ୍ରେମିକା ହେ’ ପୃଥିବୀ

ତୁମେ ମୋତେ ଭଲପାଅ କି ନା
ମୁଁ ଜାଣେନା
ମୁଁ କିଂତୁ ତୁମକୁ ଭଲ ପାଇଛି
ମୁକ୍ତ ପ୍ରଶସ୍ତ ତମର ତନୁ ଓ ମନ
ମୋର ଭଲପାଇବା ଉପଯୁକ୍ତ
ସ୍ଥଳଟିଏ ମନେକରି
ବାରଂବାର ମୋ’ର ହୃଦୟର ଦର୍ପଣରେ
ତମକୁ ପ୍ରତିବିଂବିତ କରିଛି ।
ହେ ମୋର ଅଂତରଂଗ ତାର ଅଂତରଂଗ
ତମେ କିଂତୁ ଆବଦ୍ଧ ନୁହଁ
ମୋ’ର ସଂପର୍କର
କେଉଁ ନିର୍ଦ୍ଦିଷ୍ଟ ପରିଧିରେ
ଅଥବା ସାମାଜିକତାର
ତଥାକଥିତ ବଂଧନୀ ଭିତରେ ।
କୌଣସି ବିନିମୟର ଇଚ୍ଛାରେ
ମୁଁ ତମକୁ ଦେଇନାହିଁ କିଛି
କୌଣସି ଦେବାର ଇଚ୍ଛାରେ
ତୁମେ ପ୍ରତିବିଂବିତ

ହୋଇନାହଁ ମୋଠାରେ
ସମୟର ସ୍ୱଚ୍ଛଧବଳ କାନ୍‌ଭାସ୍ ଉପରେ
କେବଳ ଦୁଇଟି ହୃଦୟ
ଦୁଇଟି ଆତ୍ମା
ଏକାଠି ହୋଇଯାଇଛି;
ଗୋଟାଏ ପ୍ରତୀକ ଆଉ ଗୋଟାଏ ପ୍ରତୀକିତ;
ଗୋଟାଏ ଆଲୋକ ଆଉ
ଗୋଟାଏ ଆଲୋକିତ;
ଉପମା ଉପମେୟର ଜଗତ ଭିତରେ
ଦୁଇଟି ଝଲସିତ ହୃଦୟ ଦୁଇଟି ପକ୍ଷୀ
ଦୁଇଟି ଦୀଗଂତ- ସାମଗ୍ରୀକ ଭାବରେ
ସାଗର ଚୁମିବା ଇଚ୍ଛାରେ ଧାବିତ;
ସ୍ନେହ ପ୍ରେମ ଭଲ ପାଇବାର ସ୍ୱରୂପ
ଏଇ ଅସହାୟ ପୃଥିବୀ ବକ୍ଷରେ
ଝରଣାର ଜଳ ପରି
କଳକଳ ଧ୍ୱନୀରେ ପ୍ରବାହିତ;
ରୋଗ ଶୋକ ଜରା ବ୍ୟାଧି ଓ ସଂଘର୍ଷରେ
ବିଦ୍ୟୁତ ଚମକରେ ଉଦ୍‌ଭାଷିତ ।
ହେ ପ୍ରେମିକା ! ହେ ପୃଥିବୀ !

ଅତୀତରୁ ଆଜି ଓ କାଲି ପର୍ଯ୍ୟଂତ
ଅନଂତ କାଳ ଯାଏ
ମୁଁ ତମ ସହ ସଂପର୍କରେ ଛଂଦି ହୋଇଯାଇଛି
ଯାହାର  ଗତି ଅନଂତ ।
ତମର ମୋର ଏଇ ମୁକ୍ତ ସଂପର୍କର
ଆଦିମ ରତିକ୍ରୀଡା ଦ୍ୱାରା
ବିଶ୍ୱ ବ୍ରହ୍ମାଂଡ ହେବ ନାହିଁ କଲୁଷିତ
ବରଂ ହେବ ଚକିତ ଉଦ୍‌ଭାସିତ
ଆମର ଏଇ ଚିର ନିର୍ମଳ ସଂପର୍କ ମଧ ଦେଇ
ଭାଂଗି ଯାଇ ପାରେ ପରିବାର
ସଂକୁଚିତ ହୋଇଯାଇପାରେ
ଶିକ୍ଷାନୁଷ୍ଠାନ, ଦେବାଳୟ,
ପ୍ରାର୍ଥନା ମଂଦିର
ବିପରିତ ମୁଖରେ ଗତି କରିପାରେ ସମାଜ
ଏବଂ ଅଂତିମରେ ଆମର ଏହି
ସଂପର୍କର ସଂଶ୍ଳେଷ
ସୃଷ୍ଟି କରିପାରେ କିଛି ଶବ୍ଦ
ଯାହାର ଅର୍ଥ ଅସୀମ- ଶୀର୍ଷ ସଂଯତ
ଭଲ-ମଂଦ, ନୀତି-ଅନୀତି, ନ୍ୟାୟ-ଅନ୍ୟାୟ,
ଜୟ-ପରାଜୟର ଉର୍ଦ୍ଧ୍ୱକୁ ଉତ୍‌ଥିତ ହୋଇ
ନିଶ୍ଚିତ କରୁଥିବ 'ଗତିଧ୍ୱମତଃ'।



# କଥା ଦିଅ

କଥା ଦିଅ !
ତମେ ମଣିଷ ଓ ପ୍ରକୃତିକୁ ଭଲପାଇବ;
ମୁଁ ତମଠାରୁ  କାଢ଼ି ନେବି ଦୁଃଖ
ତମେ ଅନ୍ୟମାନଙ୍କ ପାଇଁ ବଂଚିବ
ଅନ୍ୟର ଦୁଃଖରେ ଦୁଃଖି ହେବ
ମୁଁ ତମର ହୋଇଯିବି ।
ତମେ ଏକ ଭୟ ଶୂନ୍ୟ
ଯୌକ୍ତିକ ଜୀବନ ଜିଇଁବ
ମୁଁ ତମ ହାତରେ ଗୋଟାଏ
ପୃଥିବୀ ଅଜାଡି ଦେବି ।
ତମେ ଶ୍ରମ ଆନନ୍ଦରେ
ମଜଗୁଲ୍ ରହିବ
ମୁଁ ତମ ସମ୍ମୁଖରେ
ପ୍ରକୃତି ହୋଇ ଉଭା ହେବି ।
ଅଫୁରଂତ ଭଲ ପାଇବାରେ
ଅଧିର ହେଲେ ତମକୁ ମୁଁ
ସ୍ନେହର ପରଶ ଦେବି, ଶକ୍ତ କରି
ଗଢ଼ି ତୋଳିବି;

ମୋର ଯାହା କିଛି ସାମର୍ଥ୍ୟ ତମକୁ
ସମର୍ପି ଦେବି ଓ ଶେଷରେ
ତମରି ସମତୁଲ୍ୟ ହେବି ।
ଜୀବନ ରଣାଂଗନରେ ତମକୁ ମୁଁ
ବିଜୟୀ ହେବାର ଦେଖିବି
ଚିତ୍ରଶାଳାରେ ଚିତ୍ରକର ବନାଇବି
ଓଠରେ ବଂଶୀର ସ୍ୱର ଉକୁଟାଇବି
ତମ କଂଠରେ କୋକିଳର
କୁହୁତାନ ରଚିବି ।
ତମ ଆଖିରେ ସ୍ୱପ୍ନର ଅଂଜନ
ବୋଳି ଦେବି
ତମର ହୃଦୟର ଆଶାର
କଳିକାଟିକୁ ଫୁଟାଇବି
ତମକୁ ବୁଦ୍ଧ, ଯୀଶୁ, ଗାଂଧୀ ଓ ମାର୍କସଂକର
ଆଲୋକରେ ଆଲୋକିତ ହେବାର ଦେଖିବି;
ଶେଷରେ ତମଠାରୁ ଆଲୋକ
ନେଇ ତମରି ଆଲୋକରେ
ମୁଁ ଆଲୋକିତ ହେବି ।
ତମେ ଭଲ ପାଅ ମୋତେ
ମୋ ପରି ହୁଅ
ମୁଁ ଯେ ତମପରି ହୋଇଯିବି ।



# ଆଖି ଲୁହ ଢାଳିବି ପଛେ ମୁଁ

ଆଖି ଲୁହ ଢାଳିବି ପଛେ ମୁଁ
ଅଭିଶାପ ଦେବିନି ଗୋ ପ୍ରିୟେ,
ତମର ମୋହର ପ୍ରେମ
ସ୍ମୃତି ହୋଇ ଯାହା ରହିଯାଏ,
ସାଉଁଟି ନେବି ମୁଁ ତାକୁ
ସମୟର ବେଳାଭୂମି ପରେ,
ଦୁଃଖ କରିବିନି ଯେଣୁ
ତମଠାରୁ ନାହିଁ ଯେ ଦୂରରେ ।
ଦୂରେଇ ଦେଇଛ ବୋଲି
କାଂଦେ ସିନା... ରାଗ ମୁଁ
କରେନା
ତମ ପରିବେଶ... ମୋତେ
ନଯିବାକୁ..କରିଅଛି
ମନା ।
ଅଭିମାନ ଭରା କଂଣ୍ଠେ... କହୁଛି ମୁଁ
ଏତକ ମୋ' ଘେନ
ବିବାହିତ ଯେଣୁ ମୁଇଁ... ତମ ପ୍ରେମେ
ନୁହଁଇ ଭାଜନ ।

ତମ କୁମାରୀତ୍ୱ ଦେହେ ଭୁଲ୍ କ୍ରମେ
କରିଛି ଆଘାତ
ତମ ପ୍ରତିଷ୍ଠାରେ ଯାହା ନଜାଣି ମୁଁ
ସୃଷ୍ଟି କଲି କ୍ଷତ ।
କ୍ଷମା କର ପ୍ରିୟା ମୋର, କ୍ଷମା କର
ସ୍ନେହାସ୍ପଦା ମାନୀ,
ଏଥିପାଇଁ କେବେ ଦିନେ ହେବୁ ନାହିଁ
ତୁ ଅଭିମାନିନୀ ।
ଆଜିଠାରୁ ସ୍ନେହମୟୀ, ଖୋଜିବୁନି
ମୋତେ କିଂତୁ ଦିନେ,
ଚିରଦିନ ମୁଇଁ ତୋତେ, ପାଉଥିବି
ଭଲ ମନେ ମନେ ।
ତୋ ସମ୍ମାନେ ଆଘାତ ମୁଁ, ଆଣିବାକୁ
ଚାହୁଁନାହିଁ ଯେଣୁ
ସାକ୍ଷାତ ନହେବା ଭଲ, ଆଜିଠାରୁ
ଭାବୁଛି ମୁଁ ତେଣୁ ।
ନୀରବରେ ଭଲ ପାଇ, ମୃତ୍ୟୁକୁ ମୁଁ
ଅପେକ୍ଷା କରିବି
ମୋ ମୃତ୍ୟୁ ପରେ ମୁଁ ନିଶ୍ଚେ

ହୃଦୟେ ତୋ
ଲାଖି ରହିଥିବି
ଏଇତକ ପ୍ରାପ୍ୟ ମୁଁ ଯେ, କରୁଅଛି
ତୋହଠାରେ ଦାବୀ
ମୋତେ ତୁ ପାସୋରି ଦେଇ, ହେବୁକିରେ
ସୁଖ ଅନୁରାଗୀ ।
ରୁକ୍ଷ ମୋ'ର ଜୀବନରେ, ହତାଶାର
ଘୂର୍ଣ୍ଣି ଝଡ ପରି
ଅଧିକ ଦେବୁନି ବ୍ୟଥା, ଏତକ ମୋ
ତୋ'ଠାରେ ଗୁହାରି ।
ତୋର ପ୍ରେମ ପାଶେ ଋଣୀ, ଚିର ଦିନ
ରହିଥିବି ଏକା
ଦୁଃଖମୟ ଏ ଜୀବନେ, ତୁଇ ମୋ'ର
ବିରହୀ ନାୟିକା ।



# ତମେ କି ପାରିବ ନେଇ

ମୁଁ ଯେ ଏକ ବହ୍ନି ଶିଖା,
ମୋତେ ତୁମେ ପ୍ରେମକର ନାହିଁ
ହେ ଲଳିତ କନ୍ୟା !
ଲବଂଗ ଦ୍ୱୀପର ନାରୀ ସୁକୁମାରୀ
ଉତ୍ତରଳ ବନ୍ୟା-
ଲିଭାଅନା, ଲିଭାଅନା ଆଉ
ତରଳ ଲାଭାର ସ୍ରୋତ
ମୋ ସୂର୍ଯ୍ୟର ସ୍ୱପ୍ନ ଦାଉ ଦାଉ...
ହେ ଲଳିତ କନ୍ୟା !
ଲବଂଗ ଦ୍ୱୀପର ନାରୀ ସୁକୁମାରୀ
ଉତ୍ତରଳ ବନ୍ୟା-
ପ୍ଲାବିତ ମୁଁ ହୃଦେ ପାରାବାରେ !
ତଥାପି ତମର ପ୍ରେମ ମୋତେ କିଂତୁ ଘାରେ !
ଭାରି ଘାରେ !
କବିତାର ସମୁଦ୍ରରେ ଲଂଫ ଦେଇ ପାରିବକି
ତମେ ମୋତେ ଧରି
ପ୍ରେମ ନୁହଁ ମୁକ୍ତି ପାଇଁ...
ମୁକ୍ତି ପାଇଁ, ମୁଁ ଯେ ଏକ ସ୍ୱପ୍ନର ଭିକାରୀ ।
ମୋ ତ୍ୟାଗର ସିଲଟରେ

କାଳେ ଅବା ପଡିଯିବ ଗାର
ଭାଂଗି ହେବ ଟୁକୁରା ଟୁକୁରା
ଅମାନିଆ ବାଳକର
ଅବୋଧ ଇଚ୍ଛାର ଭିଡେ
କ୍ରମାଗତ ତାର ପାଠପଢା,
ବଂଦ ହେବ କାଳେ
ମୋ ଭିତରେ ମୋତେ ପୁଣି,
ମୋ ଭୟ ଓଗାଳେ
ହେ ଲଳିତ କନ୍ୟା !
ଲବଂଗ ଦ୍ୱୀପର ନାରୀ, ସୁକୁମାରୀ
ଉତ୍ତରଳ ବନ୍ୟା
ଶୁଣ ଶୁଣ ! ମୁଁ ଯେ ଏକ ବିଦ୍ରୋହୀ ବାଳକ
ମୋତେ ତୁମେ ପ୍ରେମକର ନାହିଁ
ମୋ ପଛରେ ଅଗଣିତ ମଣିଷର ଛାଇ;
ଯେଉଁ ଛାଇ କଂକାଳର ପ୍ରତିଶବ୍ଦ ମାତ୍ର,
ଯେଉଁ ଛାଇ ମାନଙ୍କର ଦିନ ନାହିଁ, ରାତି ନାହିଁ,
ସ୍ୱପ୍ନ ନାହିଁ ସାମ୍ରାଜ୍ୟ ବି ନାହିଁ
କିଂତୁ ସେଇ ଛାଇ
ଥରେ ଯଦି ଅଡି ବସେ,
ଥରେ ଯଦି ରଡି ଛାଡେ
ସମସ୍ତ ପୃଥିବୀ ଦିନେ ପ୍ରକଂପିତ ହେବ

ଏବଂ ତା ଭିତରୁ ଜନ୍ମ ନେବ
ଏକ ନୂତନ ସାମ୍ରାଜ୍ୟ-
ଯେଉଁ ସାମ୍ରାଜ୍ୟର ପ୍ରତିଟି ପୁରୁଷ ଓ
ପ୍ରତିଟି ନାରୀ
ଜଣେ ଜଣେ ସମ୍ରାଟ ଓ ସାମ୍ରାଜ୍ଞୀ ।
ହେ ଲଳିତ କନ୍ୟା ! ତମେ ପାରିବ ?
ତମେ ପାରିବ ସେଇ
ସାମ୍ରାଜ୍ୟ ଗଠନ କାର୍ଯ୍ୟରେ
ମୋ'ର ସହଯାତ୍ରିଣୀ ହୋଇ ?
କଥା ଦିଅ, ତମେ ଯଦି ମୋର
ସହଯାତ୍ରିଣୀ ହୁଅ
ସେଇ ନୂତନ ସାମ୍ରାଜ୍ୟରେ
ମୋର ବହ୍ନିମାନ ଔରସରୁ
ଜନ୍ମନେବ ଯେଉଁ ନବଜାତକ
ମୁଁ ତାର ନାଁ ଯଦି ରଖେ "ବିପ୍ଳବ"
ସେତେବେଳେ ତମର ଆପତ୍ତି ନଥିବ ?
ହେ ଲଳିତ କନ୍ୟା !
ଲବଂଗ ଦ୍ୱୀପର ନାରୀ, ସୁକୁମାରୀ
ଉଭରଳ ବନ୍ୟା
ତମକୁ ମୁଁ

ଚାହେଁ ଦେହେ ମନେ
ଗଭୀର ମଧ୍ୟାହ୍ନେ,
ତମ ସହ ସଂପର୍କର
ଆରଂଭଟା ରଚି
ପ୍ରଭାତରେ ରଚିବି ମୁଁ
ଶେଷ ପର୍ବ ମୋର
ଆମ ସଂପର୍କର ସେତୁ,
ଆଣିଦେବ ପୃଥିବୀକୁ
ପକ୍ଷୀର କାକଳି ସହ,
ସକାଳର ନବ ଇସ୍ତାହାର;
ତମେ କି ପାରିବ ନେଇ
କହ କହ ପ୍ରିୟତମା, ସେତେବେଳେ
ମୋ ଜୀବନ ଭାର ?



# ଜୀବନର ସଖି ପରିଚୟ କିଆଁ ମାଗ

ଜୀବନର ସଖି
ପରିଚୟ କିଆଁ ମାଗ
ଜୀବନ ନାହିଁ ଗୋ..
ଜୀବନ ନାହିଁ ଗୋ..
ଜୀବନର ଅନୁରାଗ ।

ଭଲ ପାଇବାର
ରୋମାଂଚକର ଦିନ
ଅତୀତ ହୋଇଛି
ଅତୀତର ସେଇ-
ଲୌହ କଂପିତ ମନ,
ପାଲଟିଛି ଦାବାନଳ
ବାସ୍ତବତାର ଜଗତ ଭିତରେ
ଧରି ମୁଁ ଭୀକ୍ଷାଥାଳ
ଖୋଜୁ ଅଛି ଅନୁରାଗ
ଜୀବନ ନାହିଁ ଗୋ
ଜୀବନର ସଖି
ପରିଚୟ କିଆଁ ମାଗ !

ଛଳନାର ଜଳଧାରା
କଳ କଳ ସୁରେ, ବହି ଯେ ଚାଲିଛି
ତାକୁ କେ ପାରିବ ରୋକି
ଜୀବନର କିଆଁ
ପରିଚୟ ମାଗ ସଖି !
ଯେଉଁଠି ନିଇତି
ତମ ମୃତ୍ୟୁର
କବର ଚାଲିଛି ଖୋଳା
ସେଠାରେ କି ସତେ
ଜୀବନ ମିଳଇ ଭଲା !
ଜୀବନର ସଖି
ପରିଚୟ କିଆଁ ମାଗ
ଜୀବନ ନାହିଁ ଗୋ
ଜୀବନ ନାହିଁ ଗୋ
ଜୀବନର ଅନୁରାଗ
ଛଡାଇ ନେଇଛି
ଦସ୍ୟୁ କେ ହାତୁ ମୋ'ର
ଧରାଇ ଦେଇଛି
ବିଷର ପିଆଲା
ମୃତ୍ୟୁ ଗରଳ ଧାର;

ସେଇ ଦିନଠାରୁ
ବଦଳି ଯାଇଛି ସଖି
ଯେଉଁ ଦିନଠାରୁ
ମୃତ୍ୟୁ ଅବିର ମାଖି
ଜୀବନର ସଂଧାନେ
ଖୋଜୁଅଛି ଏକା ଏକା
ସେଇ ଦିନଠାରୁ
ଚିର ପରିଚିତ
ବିପ୍ଳବ ମୋ'ର ସଖା ।
ଜୀବନର ସଖି ପରିଚୟ
କିଆଁ ମାଗ !
ଜୀବନ ନାହିଁ ଗୋ
ଜୀବନ ନାହିଁ ଗୋ
ଜୀବନର ଅନୁରାଗ;
ଜାଣେ ମୁଁ ସଜନୀ ଜାଣେ
ଖୋଜୁଥିଲ ତମେ
ଏଇ ଧରଣୀରେ
ଜୀବନର ପରିଚୟ
ପାଇଲନି ଯେବେ
ବ୍ୟର୍ଥ ହେଲଗୋ
ଆସିଲ ମୋ ପାଶେ ଚାଲି
ଜାଣନା କି ତମେ
ଜାଣନା ସଜନୀ

ଜୀବନ ମୋ' ମରୁବାଲି !
ଜୀବନର ସଖି
ପରିଚୟ କିଆଁ ମାଗ
ଜୀବନ ନାହିଁ ଗୋ
ଜୀବନ ନାହିଁ ଗୋ
ଜୀବନର ଅନୁରାଗ;
ମଣିଷ ଯେଉଁଠି
ଭୋକ ଉପାସରେ
ଖାଇବାକୁ ନାହିଁପାଏ
ମଣିଷ ଯେଉଁଠି ଦୁଃଖରେ ଷଢ଼ିଯାଏ
ସେଇଠାରେ ସଖି
ଜୀବନର ଭଲା
ପରିଚୟ ତମେ ମାଗ
ଜଡାଇ ନେବି ମୁଁ
କୋଳାଇ ନେବି ମୁଁ ଆଗ

ମାଗିକି ପାରିବ ତମେ
ଧ୍ୱଂସର କେଉଁ
ଇଲାକାରେ ଏକା
ସୃଜନ ସ୍ୱପ୍ନେ
ଏକାଠି ହେବାକି ଆମେ ?



# କ୍ରମଶଃ ଶିଥିଳ ହୁଏ

କ୍ରମଶଃ ଶିଥିଳ ହୁଏ
ଯୋଗାଯୋଗ
ସଂକୁଚିତ ଜୀବନର ମାୟା
କ୍ରମଶଃ ହୁଗୁଳି ଯାଏ ସ୍ନେହ, ପ୍ରେମ,
ଆବେଗର ରାହା ।
ତମେ ଏକା କହିପାର,
ନାଟକର ଶେଷ ଦୃଶ୍ୟ
ବିୟୋଗର ଅବା ମିଳନର
କାହାପାଇଁ ଶୋକାବହ
କାହାପାଇଁ
ତମର ନା ମୋର ?
ମୃତ୍ୟୁ ଯେଣୁ ପିଛାକରେ,
ମୋତେ ମୁଇଁ
ପାରେ ନାହିଁଚିହ୍ନି
ଦୁଃଖରେ ଫାଟିବି ଗଲେ
ସୀତା ପରି,
ଫାଟିଯା ମେଦିନୀ
କହିପାରୁ ନାହିଁ ବୋଲି,

ଜୀବନକୁ ଯଂତ୍ରଣାରେ ଭରି
କାଂଦୁଥିବି ଏକା ଏକା
ପିଂଧିଥିବା ଲୁଗା ଜାମା
ଛାତିକୁ ଓଟାରି ।

ଧରିତ୍ରୀ ହେ ! ତୁମେ ମୋତେ
ସାହା ହୁଅ
ଜୀବନରେ ଅତି ମୁଁ ନିରୀହ
ଯଦି କେବେ ଉଣା ହୁଏ,
ମୋ ପାଇଁ କା' ଦରଦର ଲୁହ
ତମେ ତାକୁ କହିଦିଅ,
ଏ ଜୀବନେ ନାହିଁ ତାର ଲୋଡା,
ସ୍ନେହ ପ୍ରେମ ବିନା ଏଠି
ତାର ବଂଚିବାର ପୀଡା,
ଦୁର୍ବହ ହେଲାଣି ଯେଣୁ,
ନେଉଅଛି ବିଦାୟ ! ବିଦାୟ !
ଏତିକି ତା ନିବେଦନ ମୃତ୍ୟୁ ପରେ
ତାର ଆଖି ଲୁହ
ପୋଛି ଦେଉ ଯିଏ ତାକୁ ଭଲପାଏ
ତାର ସେଇ ସ୍ନେହର ଆଂଗୁଳି
ଆଖିକୁ ତା ସ୍ପର୍ଶକରୁ
ଜୀବନରେ ଏତିକି ତା ଅଳି ।

■■

# ଝୁରି ହେବାଠାରୁ ସୁଖ

ଝୁରି ହେବାଠାରୁ ସୁଖ
ନାହିଁ ଜୀବନରେ... ନିତିଦିନ
ଝୁରି ହୋଇ ତମ ପାଇଁ ମରେ
ପ୍ରତି ମୁହୂର୍ତ୍ତରେ... କାଂଦେ
ପ୍ରତି ମୁହୂର୍ତ୍ତରେ ହସେ
ପ୍ରତି ମୁହୂର୍ତ୍ତରେ ସ୍ୱପ୍ନ..
ଦେଖେ ତମଠାରେ ;
ତମେ ମୋର ଜୀବନର
ଦୁର୍ବୋଦ୍ଧ କବିତା
ତମେ ମୋର ଜୀବନର
ସ୍ୱପ୍ନମୟ ଗୀତା
ତମ ରକ୍ତେ ପ୍ରବାହିତ... ମୋ ରକ୍ତ
କଣିକା
ତମରି ସ୍ପଂଦନ ମୋର... ପ୍ରତିଟି
ସ୍ନାୟୁରେ ।
ଆଖିରୁ ମୋ ଲୁହଧାର...ବହେ
ତମ ପାଇଁ
ତମକଥା ଭାବି ଭାବି... ନିଦ

ହୁଏ ନାହିଁ
ଅନେକ ପୋଛିଛ ଅଶ୍ରୁ... ତମରି
ହାତରେ
ସେ ହାତକୁ ନେଇ ପୁଣି ... ଗାଲେ
ଥୋଇବାରେ
କେତେ ଯେ ପାଇଛ ସୁଖ... କହି
ନାହିଁପାରେ ।
ଏବେ କେ ପୋଛିବ ଅଶ୍ରୁ... ଦୂରେ
ଚାଲିଗଲେ
ଅପୋଛା ରହିବ କି ସେ ...ଭାବି
ନାହିଁପାରେ ।

ମାନି ମୋର ଜୀବନରେ ... ସଦା
ମାନିମୟୀ
ସେ ମାନକୁ ଭାଂଗିବାକୁ... ସଂବଳ
ମୋ କାହିଁ ?

■■

# ଅଂତର ମୋର

ଅଂତରେ ମୋର ଭରି ଦେଇ ଅଛ
ପୂଣ୍ୟଧୂଳି
ଶୂନ୍ୟ କରି ... ପାପ ପୂଣ୍ୟର
ଭଂଡାର ଘର... ଶୂନ୍ୟ କରି
କିଏ ସେ ସହିବ
ଭଲ ପାଇବାର ରୌଦ୍ରତାପ
ତଦମ ବିନା ମାନୀ ଜୀବନ ଯାକ ?
ତମେତ ଶହୀଦ ଭଲ ପାଇବାର
ଶାଣିତ ଛୁରୀ
ସମ୍ମୁଖେ ତମ ଝଡ ଝଞ୍ଜାର ସୂକ୍ଷ୍ମ ଢାଲ
ତମକୁ ପାରେନା ଅଟକାଇ ଯେଣୁ
ପ୍ରେମର ମୂଲ
ଦେଇପାର ତମେ ଅଂତର ତଳୁ
ନିଗାଡି ଲୁହ
ତମରି ଉପରୁ ବିଶ୍ୱାସ ମୋର
ତୁଟି ନାହିଁ, ତମେ ଯେଉଁଠି ରୁହ
ମୋହରି ଭିତରେ ଦେଖିବ ମୁହଁ
ତମର ଛାତିରେ ଝରି ପଡୁଥିବ
ମୋହରି ଲୁହ ।

# ପ୍ରିୟତମା ତୋତେ

ପ୍ରିୟତମା ତୋତେ
ଅନେକ ଦିନରୁ ଯାଇଛି ଭୁଲି
ଆଜି ମନେପଡେ
ତୋ ପାଇଁ କବିତା ଲେଖୁନି ବୋଲି
ସେଦିନ ପରି
ଆଜି ମନେ ପଡେ କିପରି ବାହିଲି
ପ୍ରେମର ତରୀ !
ଆଜି ମନେ ପଡେ
ସେଦିନର କଥା
ଅକୁହା ଗୀତି
ଅଳ୍ପ କେତୋଟି କବିତା ଭିତରେ
ଯାହାକୁ ଲେଖି
ଛପାଇ ଦେଲି
ସେଇ କବିତାର
ନୁହେଁ ମୁଁ ରଚକ, ନୁହେଁ ମୁଁ ବୋଲି
ଯେତେ କହିଲେ ବି ପଡଇ ମନେ
ଜୀବନ ଝଡର
ସଂଘାତମୟ

ପ୍ରତିଟି କ୍ଷଣେ
ଧୂସର ବାଲିରୁ
ସାଉଁଟି ଥିଲି ମୁଁ
ସବୁଜ ଘାସ
ଘନ ବନାନୀରେ
ବାଘର ତ୍ରାସ ।
ଜୀବନର ଯାହା
ଯେତେବା ଶପଥ
ସବୁକୁ ଭୁଲି...
ଭାବି ମୁଁ ଥିଲି
ଦେହର ଗଂଧେ
ଜୀବନଟା ଯେବେ
ତରୁଣ ନିଶା
ଯଉବନ ମଦେ
ଧରଣୀଟା ଖାଲି
ପ୍ରଣୟ ମିଶା ।
ଓଠରେ ଓଠକୁ
ମିଶାଇ ସେଦିନ
ପ୍ରିୟତମା ତୋତେ
ପଚାରିଥିଲି
ଭୁଲିଯିବୁ କାଲେ
ଭାବୁଛି ମନେ
ଅଭିମାନ ଭରା
କଂଠେ କହିଲୁ
ଇଏକି କହ !
ତମ ବିନା ଏଇ ଧରଣୀଟା
ଆହା ଶୂନ୍ୟମୟ ।

ଅନେକ ଦିନତ ଗଲାଣି ବିତି
ଆଜି ମନେ ପଡେ..
ଅତିତ ଦିନର
ବିରହ ବିଧୂର ପରାଣ ଗୀତି
ହୃଦୟ ଦେଇ ମୁଁ
ଭଲ ପାଇଥିଲି
ରକ୍ତ ଦେଇ
ଆଖିରେ ତୋହର
ଢଳ ଢଳ କେତେ
ଲୋତକ ନଈ;
ଭୁଲିନି ସେଦିନ
ଭୁଲିଲି ଆଜି ମୁଁ
ଜୀବନ ଝଡର ଏକଲା ମାଝୀ
ଅଭାବର ମରୁ ଉପତ୍ୟକାର
ଆତସବାଜି..ଯେଦିନ ଶୁଣିଲି
ସେଇ ଦିନଠାରୁ
ଚେତନା ବୋଇତ
ନେଉଛି ବାହୀ
ମଣିଷର ମେଳେ
ଲେଖୁଛି କବିତା
ମଣିଷ ପାଇଁ
ଭୁଲ୍ ବୁଝିବୁନି ସ୍ନେହର ଧନ
ତୋତେ ଭୁଲିଯାଇ
ଭଲପାଇ ଗଲି ଲକ୍ଷଜନ ।

■■

## ମୋତେ ଖୁନ୍ କର

ଅନେକ ଗବାକ୍ଷ ମୋତେ
ଡାକେ ହାତଠାରି
ସେଠାରେ ନିରୋଳା କିଛି
ଆତ୍ମାର ଆହ୍ୱାନ
ଶିଶିରର ବିଂଦୁପରି
ସ୍ୱଚ୍ଛ ଓ ଧବଳ
ଅନୁଭୂତିମାନ-
ହୃଦୟକୁ ଦିଏ ମୁକ୍ତ କରି
ପ୍ରଶସ୍ତ ଉଦାର ହୁଏ
ଆତ୍ମା ମୋ ମୁକୁଳି;
ମୁଁ ନିଜକୁ ପାରେ ନାହିଁ
ସଂକୁଚିତ କରି
ଏକ ନିରୋଳା କୋଠରୀ ମଧ୍ୟେ
ଆବଦ୍ଧ ହେବାକୁ ମୋତେ
ଲାଗେନାହିଁ ଭଲ
ଯଦିଓବା କିଛି କ୍ଷଣ ପାଇଁ
ସେଠାରେ ଅଟକି ରହେ,
ତଥାପି ଚାହେଁନା

ଯୁଗ ଯୁଗ ପାଇଁ
ସେଇଠାରେ ଥିବି ବଂଦୀ ହୋଇ ।
ଭଲପାଏ ବୋଲି ଜୀବନକୁ
ତମକୁ ମୁଁ ଭଲପାଏ ପ୍ରିୟେ
କିଂତୁ ଯା ନୁହେଁ,
ତମ ପାଇଁ ଆଉ କାହାକୁ ମୁଁ
ଘୃଣାକରେ ତମେ ଏହା ଚାହଁ !

ମୁଁ କାହାକୁ ଘୃଣା କରି
ପାରେନାହିଁ ବ୍ୟକ୍ତିଗତ ଭାବେ
ଯେତେବା ଘୃଣିତ ହେଲେ
କୌଣସି ବ୍ୟକ୍ତିତ୍ୱ
ମୁଁ ତାହାକୁ ଘୃଣା କରେନାତ ।
ଭଲପାଇବାର ଅର୍ଥ ଯାହା ମୁଁ ବୁଝେ
କାହାକୁ ଘୃଣା ନକରିବା
ବରଂ ଘୃଣିତ ବ୍ୟକ୍ତିତ୍ୱଠାରୁ
ନିଜକୁ ଦୂରେଇ ନେଇ
ପ୍ରିୟଜନ ନିକଟରେ ନିଜକୁ ଥାପିବା
ଏକାକାର ହେବା
ଅତି ନିବିଡରେ
ସ୍ନେହରେ ପ୍ରେମରେ
ଆତ୍ମା ସହ ଆତ୍ମାକୁ ଯୋଡିବା ।
ଯାଠାରୁ ଅଧିକ ତମେ କଣ ଚାହଁ କୁହ
ଏସବୁ ନବୁଝି ଯଦି ନିଜର ସ୍ୱୀକୃତି ପାଇଁ
ନିଜର କୋଠରୀ ମଧ୍ୟେ ନିଜେ ବଂଦୀ ରୁହ
ଆଶଂକାରେ ଜର୍ଜରିତ ହୁଅ

ସାମାଜିକ ସ୍ୱୀକୃତିର ଅଭାବରୁ
ମୋତେ ଗାଳି ଦିଅ;
ମୁଁ କିଂତୁ ନାଚାର
ମୋର ସ୍ୱୀକୃତି ଯେଣୁ ତମ ପାଇଁ
ସାମାଜିକ ସ୍ୱୀକୃତିଠୁ ବଡ ।

ସମୟର ବ୍ୟବଧାନ ଯଦି କିଛିଥାଏ
ତାକୁ ତମେ ସହ୍ୟ କରି ନିଅ
ଏଣୁ ତେଣୁ କଥା କହି
ମୋତେ କିଂତୁ ବ୍ୟଥା ନାହିଁ ଦିଅ ।
ହୃଦୟଠୁଁ ବଡ
ପ୍ରିୟତମା ମୋର
ଶପଥ ନେଉଛି ମୁଇଁ
ଲୁହରେ ଗାଧୋଇ ଦେବି ତମରି ଶରୀର
ରକ୍ତରେ ପଖାଳି ଦେବି ତମରି ଅଂତର
ତଥାପି ନହୁଏ ଯଦି ବିଶ୍ୱାସ ତମର
ଛାତି ମୁଁ ପତାଇ ଦିଏ
ମୋତେ ଖୁନ୍ କର ।



# ଏମିତି ହୋଇପାରେ

ଏମିତି ହୋଇପାରେ
ମୁଁ ମୋର ଦୁଃଖକୁ ନେଇ
ଦୁନିଆ ଭିତରେ
ଲକ୍ଷେ କୋଟି ମଣିଷର ଦୁଃଖ ସହ
ମିଶାଇଲେ ଯାଇ
ତମ ଦେଇଥିବା ଦୁଃଖ
ମୋ ଛାତିର କାନ୍‌ଭାସ୍ ପରେ
ଅଲିଭା ଦାଗର ପରି
ଯାହା ଅଂକା ହୋଇଅଛି
ଲିଭିଯାଇପାରେ ।

କଥା ଛଳରେ ବଂଧୁ ଜଣେ କହିଲେ
କବି ମାନେ ସତରେ ଦୁର୍ବଳ
ଲକ୍ଷେ ଯୋଜନ ଦୂରରୁ ଅଂଧାର ଭିତରୁ
ଶୁଦ୍ଧ ହୁଁଟିଏ ମାରି ନିରବ ରହିଲି ।
କଣ ହୋଇଗଲା କବିର
ଯଦି କେହି ପ୍ରଶ୍ନ କରେ
ଆକାଶ ଫାଟି ଯିବନି

ଧରିତ୍ରୀ ଫାଟିଯିବନି
ଫାଟିଯାଇପାରେ ହୃଦୟ କବିର
ଏବଂ ତା ଭିତରୁ ଉଚ୍ଚାରିତ
ହୋଇପାରେ
ଶବ୍ଦ କେତୋଟି ମାତ୍ର
ତାକୁ ତୁମେ ବଂଚିବାକୁ ଦିଅ
ପ୍ରତାରଣା ଭିତରେ ବଂଚିବାକୁ
ଚାହେଁ ନାହିଁ ବୋଲି
ସିଏ ମରିଯାଉ
ତମେ ଏହା ଚାହଁ !
ଦୁନିଆଁରେ କେହି କାହାର ନୁହଁ
ସଭିଏଁ ସମସ୍ତଙ୍କର
ସଭିଏଁ ତ ନିଜର ଓ ପର
ଜୀବନଟା ହୁଏତ ଏମିତି
ସବୁକୁଟାକାଠିମାନେ
ଏକାଠି ହେବାର ଅର୍ଥ
ଭାସିଯିବା ନୁହଁ
ଜଳି ଉଠିବାବି ।
ବଡ ବିଚିତ୍ର ଏ ଜୀବନ
ବିଚିତ୍ର ଯେଣୁ
କେତେବେଳେ ଜାଲପରି
ଛନ୍ଦେ ସେ ମାୟାରେ
କେତେବେଳେ ଶିଆଳି ଲଟାରେ
କିଂତୁ ଯା ଭିତରେ ଭାବିବାଟା
ନିରର୍ଥକ ନୁହଁ
ମଣିଷ ଯେ ମୁକ୍ତି ପାଇପାରେ ।

■■

# ନିଜସ୍ୱ ଦୁଃଖର ଚାରା

ଅବ୍ୟକ୍ତ ମୋ ବେଦନାକୁ
ବ୍ୟକ୍ତ କରିବା ସକାଶେ
ଭାଷା ନାହିଁ ପାଏ
ସ୍ନେହ ପ୍ରେମ ଅନ୍ୱେଷଣେ
ବ୍ୟର୍ଥ ଯେଣୁ ମୁଁ ଆଜି
ଦୁଃଖରେ ବଂଚେ ପୁଣି
ଦୁଃଖରେ ଯିଏ ।
ଦୁଃଖରେ ବଂଚିଛି ଯେଣୁ
ଅତୀତର ଅନୁଭୂତି
ମୃତପ୍ରାୟ ସବୁ ମନେହୁଏ
ଦୁଃଖର ଲାଘବ ପାଇଁ ସତେ ଅବା
କିଛିନାହିଁ କେହି ନାହିଁ
ଆଖିଲୁହେ ହୃଦୟକୁ ଧୂଏ
ତମେ ଯଦି ଦେଖା ହୁଅ
ପଚାର କିପରି ଅଛ ?
ଆଖି ଲୁହ ଦେବ ମୋ ଉତ୍ତର
ତମ ବିନା ବଂଚିପାରେ ସତ କିଂତୁ
ଖୋଳୁଥିବି ମୃତ୍ୟୁର କବର ।



## ସଂପର୍କ ମୋର

ନିଜର ବୋଲି କେହି ଜଣେ ଅଛି
ଭାବିବାରେ ଯଥେଷ୍ଟ ଆନଂଦ
ପବନରେ ଫୁଲର ମହକ ପରି
ବାଦଲରେ ବିଜୁଳିର ଚମକ ପରି
ଜୀବନର ଛଂଦ ।
ଏକୁଟିଆ ରହି ହୁଏନା ବୋଲିତ
ଲୋଡାଯାଏ ସାଥୀ
ସଂବେଦନଶୀଳ ଏକ ହୃଦୟ
ସ୍ୱପ୍ନରେ ବୁଡୁବୁଡୁ ଏକ ମନ ।
ସଂସାରଠାରୁ ଅଧିକ କିଛି
ଆଶା କରେନା ବୋଲି ମୁଁ
ତମକୁ ଭଲପାଏ
କିଂତୁ ଏଇ କଥା ପଦକ କହିହୁଏନା
କାଳେ ସଂପର୍କରେ ଲାଗିଯିବ ଦାଗ ।
ତମେ ମୋତେ ତମେ ବୋଲି କୁହ
ତମଠାରୁ ତମ ସଂବୋଧନର ମୋହ
କେଜାଣି କାହିଁକି ଏକ ଦୁର୍ବଳତା ।
ଜୀବନର ସବୁ ଦୁଃଖକୁ ସମର୍ପି ଦେଇଛି

ତମଠାରେ ଯେହେତୁ ଆକାଶ ସୁଂଦର
ଧରିତ୍ରୀ ସୁଂଦର
ଭଲପାଇବାର ଆବେଗରେ
ମୁଖରିତ ମହାକାଳ ।
ସଂପର୍କ ଏକ ନଈପଠା
ଯେଉଁଠି ଦୁଇଟି ପ୍ରାଣୀ ପରସ୍ପର
ଆପଣାପଣ ଓ ନୈକଟ୍ୟରେ ବିଭୋର
ଏକୂଳରୁ ସେକୂଳ
ଯୁଗରୁ ଯୁଗାଂତର ।
କିଏ କେବେ ଆସିଲା ବା ନଆସିଲା
କିଛି ଯାଏ ଆସେନା
ତମେ ଯେ ଆସିଛ
ଆଖି ଲୁହରେ ଧୋଇ
ହୋଇଯାଇଛି ଅଂତର
ବିଗତ ହୋଇ ଯାଇଛି
ଘନ କୁହୁଡ଼ିର ଦିନ
ସଂପର୍କଯେ ମୋର ତମ ସହ
ପବିତ୍ର, ସ୍ୱଚ୍ଛ ଓ ନିର୍ମଳ ।



# ତମ ସହ ସଂପର୍କ

ଅନେକ ରହସ୍ୟମୟ
ତମର ସୌନ୍ଦର୍ଯ୍ୟ
ଧୂପପରି ବାସ୍ନାୟିତ ପବିତ୍ର ହୃଦୟ
ଏକାଂତ ମୁରବୀ ପଣ
ମମତାରେ ଭରା
ମୁଁ ନୁହେଁ ତମର କେହି
ଜ୍ଞାତି ପରିଜନ
ପତି ବା ପ୍ରେମିକ
ଅବା କେଉଁ ରକ୍ତର ସଂପର୍କ ;
ତଥାପି ଆପଣା ପଣେ
ବାଂଧିନିଅ ମୋତେ
ତମ ପାଇଁ ପରିଚିତ ବଂଧୁ ମୁଁ ଯେ ଏକ ।
ଅତୀତର ଦେଖା ଓ ସାକ୍ଷାତ
ମଧ୍ୟେ ପୁଣି ବିତିଯାଏ
କୋଡ଼ିଏଟି ବର୍ଷ
କୋଡିଏଟି ବସଂତର ମୃତ୍ୟୁ
ଘଟିଯିବା ପରେ
ହଠାତ୍ ତମର ଦେଖା

ରାଜଧାନୀ ଭୁବନେଶ୍ୱରରେ ;
ନୂଆ ମନ ନୂଆ ବୟସରେ
ଲୋଡିବା ପଣରେ
ନୂଆ ଅବସରେ
ରଚି ହୋଇଯାଏ
ସଂପର୍କର ନୂତନ ଖସଡା;
ଅତୀତର ଦୁଃଖ ଆଉ ଅବସାଦ ଭୁଲି
ଏ ସହର ଦୋଛକିରେ ଆମେ ଦୁହେଁ
ହୋଇଛଂତି ଛିଡା ।
ମୁଁ ତୁମର ଏକଦା ସେ ଅତୀତର
ଅଲୋଡା ନାୟକ
ବର୍ତ୍ତମାନ ପରିଚିତ ବଂଧୁ ମୁଁ ଯେ ଏକ;
ଜୀବନଟା ବେଶ୍ ଚାରୁ ବେଶ୍ କମନୀୟ
ଯେମିତି ତମସହ ମୋର ଏ ସଂପର୍କ ।



# କାହା ପାଇଁ ?

ପ୍ରେମ ଏଠି ପ୍ରତାରଣା
ମପାଚୁପା ସଂପର୍କ ଓ ସ୍ୱାର୍ଥର ନିର୍ଯ୍ୟାସ ।
ଭଲ ପାଇବାଟା ଏଠି ଭୁଲ କରିବା
ଓ ଠକି ଯିବା
ପହଁରି ନଶିଖିଥିବା ମଣିଷଟିଏ ପରି
ଗଭୀର ସମୁଦ୍ର ସହ ସଂପର୍କ ରଚିବା ।

ବଂଧୁତ୍ୱର ଅନ୍ୟନାମ ଏଠି
ହାତେ ମାପି ଚାଖଂଡେ ଚାଲିବା
ଦିଆନିଆ ସଂପର୍କର ଜଗତ ଭିତରେ
ନିସ୍ୱାର୍ଥପରତାର ଛଳନା କରିବା ।

ପଶୁ ଓ ପିଶାଚମାନେ ଏଠି ରାଜା
ଖଟିଖିଆ କଂକାଳ ସାର ମଣିଷମାନେ
ଏଠି ଉଇପୋକ
ପିରାମିଡ୍ ପରେ ପିରାମିଡ୍ ଗଢି ଚାଲିଛଂତି
ପଚାରିଲେ ଉତ୍ତର ଆସେନା
କାହା ପାଇଁ ?



# ହଠାତ୍ ସେଦିନ

ହଠାତ୍ ସେଦିନ ତମେ
ଦେଖା ହେଲ, ପଚାରିଲି
ଭଲଅଛ ?
ନିରୁତ୍ତର ଆଖିର ଆଇନା
କ୍ଷୀଣ ଏକ ଦୀର୍ଘଶ୍ୱାସ ମାରି କହିଥିଲ
ତମ ଭଲରେ ମୋ ଭଲ ।
ଏ କି ଅଜବ କଥା
ତମ ଆଖିରେ ଲୁହ
ତମେ କହିଲ-
ମୁଁ କାହିଁକି ଅନେକ ଦିନଧରି
ତମ ଚିଠିର ଉତ୍ତର ଦେଇନି
ସ୍ୱକୀୟା ରସରେ ଡୁବି
ଭୁଲିଗଲି ମୁଁ ତୁମକୁ ।
ଗୋଲାପର ସଂଧାନରେ
ବଣ ମାଳତିଠାରୁ
ଦୂରେଇ ଯିବାର ପ୍ରୟାସ ;
ଆହୁରି ଅନେକ ପ୍ରଶ୍ନ
ଅଭିମାନ ଭରା କଂଠରେ କହିଥିଲ
ମୁଁ କିଆଁ ତମ ଚଲାପଥରେ

କଂଟାହେବି
ମୋର ଅସୀମ ତ୍ୟାଗ ଯଦି
ତମ ପାରଂପାରିକ ପଥକୁ
ରୋଧ କଲା
ବରଂ ମୋତେ ଭୁଲିଯିବା ଭଲ ।
ମୁଁ ନିରୁତ୍ତର
ମୋ ଭଳି ସାମାଜିକତାର
ନିଗଡରେ ବଂଧା
କଏଦୀର କଂଠରେ
କିଏ ବା ଭରି ଦେଲା
ପ୍ରୀତିର ସ୍ୱର
କାନରେ ତାର ଆଣିଦେଲା
ମୁକ୍ତିର ଖବର
ଦୋଷ ବା କାହାର
ତମର... ମୋର
ନା ଏ ବୟସର
ନାଁ ଏ ଯୁଗର ।
ପ୍ରିୟତମା !
ସବୁ ଦୋଷ ମୋର
କିଂତୁ ଯା ବଦଳରେ ତମେ କଣ
ହୋଇପାରିବନି କ୍ଷମାଶୀଳା
ତମେ ହସିଲ...
ତମ ଆଖିରେ
ଆନଂଦାଶ୍ରୁର ଝରଣା
କହିଥିଲ-
ସତରେ ତମେ
ପାଅ ମୋତେ ଭଲ !

■■

# ଏବଂ କିଛି ଅଣୁ କବିତା

ଶୋଷ ଯାହା ଭରିଦେଲ
ଅମୃତ ନା ବିଷ
ଶୋଷ କିଂତୁ ଜୀବନରେ
ହେବନାହିଁ ଶେଷ ।

❑

ତୁମ ଆଖିପତା କବର ମୋ ହେଲେ
ଶୋଇ ପଡ଼ିବି ମୁଁ ସେଠାରେ
ତୁମ ଓଠଧାର ନଦୀ ହୋଇଗଲେ
ବହି ଯାଉଥିବି ଯେଠାରେ ।

❑

ଆବେଗକି କେବେ ମରୁଭୂମି ହୁଏ
ଜୀବନଟା ଯାର ଆକାଶ
ଦୁଃଖ ଯାହାର ଅତୀତର ବ୍ୟଥା
ସ୍ୱପ୍ନ ହେଉ ତା' ବତାସ ।

❑

ମୋ ଧୈର୍ଯ୍ୟର ପାହାଡ଼ ଯେ ଭାଂଗିଯିବ
ଜୀବନରେ ହେବି ବାଟବଣା
ମୋ ଧୈର୍ଯ୍ୟର ପାହାଡ ଯେ ଭାଂଗିଯିବ
ତମେ ଯଦି ନହୁଅ ଝରଣା ।

❑

ଆବେଗ କି କେବେ ଶୁଖିଯାଇ ପାରେ
ସେ ପରା ଅଟଇ ଝରଣା
ମଣିଷର ମନ ମରୁଭୂମି ନୁହଁ
ଅମୃତ ସେ ଯେ ପୁରୁଣା ।

❑

ତମ ଚାଲିଗଲା ପରଠାରୁ
ମନେହୁଏ ଜୀବନଟା
ଅତି ଦୁର୍ବିସହ
ତମେ ଚାଲିଗଲା ପରଠାରୁ ମନେହୁଏ
ଜୀବନଟା ଅଯଥା ସଂଶୟ ।

❑

ତମଠାରେ କାହିଁକି ଯେ ଏମିତି ବା
ଲାଖିଗଲା ମନ
ତମଠାରେ କାହିଁକି ଯେ ଏମିତି ବା
ହେଲି ମୁହିଁ ଦୀନ ।

❑

ତମ ହସ ଜହ୍ନ ପରି ତମ ଆଖି
ଆକାଶର ତାରା
ମୁଁ ମାଟିର ବୀଜ ଏକ ତମେ ମୋର
ମାତା ବସୁଂଧରା ।

❑

ଭଲ ପାଇବାର ଅପରାଧୀ ମୁଁ ଯେ ଏକ
ଛାତିରେ ମୋହର ଛୁରୀ ଦିଅ ତମେ ଭୁଷି
ତଥାପି ବଂଚି ରହିଗଲି ଯଦି ଅବା
ବିଚାରକ ତମେ ଅଟ ଯେଣୁ ଦିଅ ଫାଶୀ ।

❑

ତମରି ସୁଖରେ ମୋ ଜୀବନ ଯାଉ ବିତି
ତମ ଦୁଃଖରେ ଗାଏ ମୁଁ ଶୋକର ଗୀତି ।



ନଦୀ ହୋଇ ବହିଯାଇ କୂଳ ଲଂଘି
ଯେବେ କଥା କୁହ
ମନେହୁଏ ଜୀବନଟା
ତମ ଆଖି ପତାତଳେ
କେଇଟୋପା ଲୁହ ।



ବିଗତ ଦିନର କଥାମାନ ଯାଇଭୁଲି
ବର୍ତ୍ତମାନରେ ଖୋଜେ ତମକୁ ମୋ ମନ
ବିଗତ ଦିନର କଥାମାନ ଯାଇ ଭୁଲି
ତମରି ପ୍ରୀତିରେ ହୋଇଯାଏ ମୁଇଁ ଲୀନ।



ଧୂଷର ଏ ଧରଣୀରେ ସବୁଜିମା
ତମ ପ୍ରୀତି ସୁଧା
ଧୂଷର ଏ ଧରଣୀରେ ସବୁଜିମା
ତମରି ଚାହିଦା ।



ସବୁଜ ଏ ଚିଠି ଯାହା ମୋ ଲୁହର
ଅକ୍ଷରରେ ଭିଜା
ସବୁଜ ଏ ଚିଠି ଯାହା
ମୋ ଜୀବନେ
ତମରି ଚାହିଦା ।



ସ୍ୱର୍ଣ୍ଣ ତମର ଆକାଶ ଯଦିବା
ହୃଦୟ ତମର ବିଶ୍ୱ
ଚେତନା ତମର ଶାଣିତ ଛୁରୀକା
ଆବେଗରେ ନୁହଁ ନିଃସ୍ୱ ।



ଅନେକ ପ୍ରତୀକ୍ଷା ପରେ ଉତ୍ତର ମୋ
ମୁଁ ତୁମକୁ ଭଲପାଏ ସତେ
ଅନେକ ପ୍ରତୀକ୍ଷା ପରେ ପ୍ରଶ୍ନ ମୋର
ତମେ କ'ଣ ଭଲପାଅ ମୋତେ ?



ଦେଖିବା ଦେଖିବା ହୋଇ
ନେତାପରି ତମେ କଥା କୁହ
ଦେଖିବାର ପରିଣତି
ମୋ ଆଖିର କେଇଟୋପା ଲୁହ ।
ତାକୁ ତମେ ଉପଭୋଗ କରିପାର
ସେଥିରେ ମୋ ନାହିଁ ତିଳେ ଦୁଃଖ
ତାକୁ ତମେ ଉପଭୋଗ କରିପାର
ତାହା ମୋର ଉଜ୍ଜ୍ୱଳ ଆଲୋକ ।



ଲୁହ ମୋର ନଦୀହୋଇ ବହିଯାଏ
ଅକୁହା ମୋ ମନତଳ କଥା
ଲୁହ ମୋର ନଦୀହୋଇ ବହିଯାଏ
ତୁମେ କିଆଁ ବୁଝନା ସେ ବ୍ୟଥା ।



କେତେ ସୁଖ କେତେ କଷ୍ଟ
ଜୀବନରେ ପ୍ରେମର ମନ୍ତ୍ରଣା
ପ୍ରେମ ଯିଏ ଦେଇପାରେ
ନେଇପାରେ ସେ ତା'ର ପାଉଣା ।



ତମେ ସତେ ପାରିବକି ଦେଇ ମୋତେ
ଜୀବନରେ ପୀରତିର ମୂଲ
ତମେ ସତେ ପାରିବକି ବୁଝି ଏହା
ଏ କବିତା ଦୁଃଖର ଗଜଲ



# ସୁବର୍ଣ୍ଣ ମୁକୁଟ

ସୁବର୍ଣ୍ଣ ମୁକୁଟ ପିଂଧାଇ ଦେଇଛିନା
ତମ ମସ୍ତକରେ ।
ତମେ ତାକୁ ଓହ୍ଲାଇ ଦେବା ପୂର୍ବରୁ
ଭାବି ଦେଖିବ-
ସକାଳର ଆକାଶରୁ ଓହ୍ଲାଇ
ଦେଲେ ସୂର୍ଯ୍ୟକୁ
କଣ ହୁଏ ପୃଥିବୀର;
ରଜନୀର ଅନୁପମ ଅଂଧାର ଭିତରୁ
ଓହ୍ଲାଇ ଦେଲେ ଜହ୍ନକୁ
କଣ ହୁଏ ଆକାଶର !
ତମ ଜୀବନ ଆକାଶରେ
ସ୍ୱପ୍ନମାନେ ଜେଉ
ଖେଳୁଥିଲାବେଳେ
ତମେ କଣ ସୂର୍ଯ୍ୟକୁ
ଫିଂଗିଦେଇ ପାରିବ !
ଜହ୍ନକୁ ଓହ୍ଲାଇଦେଇ ପାରିବ !
ଯଦି ତା'ହୁଏ
(ତା' ତ ହେବାର ନୁହଁ)

ତଥାପି କିଛି ଯଦି ଅଘଟଣ ଘଟିଯାଏ
କଥା ଦେଉଛି ତୁମ ପାଇଁ ସଂଚି ରଖିଥିବା
ଅନାବିଳ ଆବେଗର
ପ୍ରତିଷ୍ଠା ସକାଶେ
ବିଶ୍ୱ ବ୍ରହ୍ମାଂଡକୁ ପ୍ରାର୍ଥନା କରିବି - ସେ
ତମର ଯତ୍ନ ନେବ
ଜୀବନରେ ଅଂତତ ଥରଟିଏ
ତମକୁ ସୁଯୋଗ ଦେବ
ସୂର୍ଯ୍ୟକୁ ପଦାନତ କରିବାର ଅହଂକାର
ଜହ୍ନକୁ ଅବହେଳାରେ ଫିଂଗି ଦେବାର
ଭୁଲ୍ କଣ ବୁଝିବା ସକାଶେ ।
ଏହାପରେ
ତମ ପାଦ ତଳର ମାଟିରୁ ମୁଁ
ସାଉଁଟି ଆଣିବି ସେଇ
ସୁବର୍ଣ୍ଣ ମୁକୁଟକୁ
ଓ ପିଂଧାଇ ଦେବି
ତମ ମସ୍ତକରେ ପୁଣି ଥରେ
ସେତେବେଳେ ଯେତେବେଳେ
ଅନୁତାପର ଅଶ୍ରୁରେ
ଉଜ୍ଜ୍ୱଳ ହୋଇ ଉଠିଥିବ ତମର ମନ;
ପ୍ରାପ୍ତିର ଗୌରବରେ
ଉକୁଟି ଉଠୁଥିବ
ତମ ଓଠରେ ଟେନାଏ ହସ ।

■■

# ସଂପର୍କ - ୨

ସଂପର୍କ ଏମିତି ଏକ ବସ୍ତୁ
ଯାହା ପଥରକୁ ପୂର୍ଣ୍ଣ କରେ
ପ୍ରେମରେ ।
ସଂପର୍କ ଏମିତି ଏକ ଜାଗା
ଯେଉଁଠି ଶୁଷ୍କ ମରୁଭୂମି ହୁଏ
ସୁଜଳା ସୁଫଳା ।
ସଂପର୍କ ଏମିତି ଏକ ସ୍ୱର୍ଗ
ଯାହା ଖୋଜିଲେ ମିଳେନା
ହଜାଇ ଦେଲେ ପାଇ ହୁଏନା ।
ସଂପର୍କ ପବନରେ ମିଶାଇ ରଖେ
ଜଳକୁ
ଜଳରେ ଜୀବନ
ମାଟିରେ ସବୁଜିମା
ଆକାଶରେ ଘନ ।
ଗଭୀରରୁ ଗଭୀରତର
ସୂକ୍ଷ୍ମରୁ ସୂକ୍ଷ୍ମାତି ସୂକ୍ଷ୍ମ
ଜଟିଳ, ଜ୍ୱାଳାମୟ, ତିକ୍ତ
ଅଥଚ ମଧୁର ଏ ସଂପର୍କ ।

# ଆଲୋକିତ ବଂଧୁତ୍ୱ

ବୀଜନେ ବସି ଏଠି
ଭାବେ ମୁଁ ଗୋଟେ କଥା
ବିରହ ମିଳନର ଇଏ କି ମଧୁରତା !
ରୂପେଲି ଜହ୍ନର ସୁନେଲି କିରଣରେ
କିଏ ସେ କହିଯାଏ ମୁରଲି ବୀଣା ସୁରେ
ସ୍ନେହର ମୂଲ ଦିଅ
ସ୍ନେହର ମୂଲ ନିଅ
ସବୁଜ-ବନାନୀରେ
ନିରବେ ଗୀତ ଗାଅ ।
ମୁଁ ଅଛି ତୁମପାଶେ
ତୁମେ ଯେ ମୋର ପାଶେ
ମଧୁର ଜୀବନର
ମଧୁର ମଧୁରାସେ ;
ପକ୍ଷୀର କାକଳୀ ମୁଁ
ତୁମେ ମୋ ଗଛ ଡାଳ
ନେଳିଆ ଆକାଶର
ଧୂସର ମହିତଳ ।
କିଏ ସେ କହେ

ସେ ଯେ
କାହା ପାଇଁ ଏ କବିତା
ବିରହ ମିଳନର ଇଏ କି ମଧୁରତା ?
ଆଖିର ଲୁହ କହେ
ବଂଧୁ ସେ ଯେ ମୋର
ଗଭୀର ହୃଦୟରେ କବିର ହୃଦୟର
ଅଂତରେ ବୀଣାବାଜେ
ଅଂତରେ ଭଲ ପାଏ
ଅଂତର କରିବନି
ଜୀବନ ଥିବାଯାଏ ।
ନିରବେ ଗୀତ ଗାଏ
ନିରବେ ଶୁଣେ ମୁଁ ତା'
ସବୁଜ ବନାନୀର,
ସବୁଜ କବିତା ତା';
ଜାଣେ ନା ତମେ କଣ,
ସେଇ ମୋ ସ୍ନେହମୟୀ
ଭଗିନୀ, ଜନନୀ ମୋ'
ଜୀବନ ଯାହା ପାଇଁ
ପ୍ରେମର ପରିଧିକୁ
ପ୍ରେମରେ ଜୋଡିଦିଏ
ବୀଜନେ ଯାହା ପାଇଁ
ଏକଲା ଗୀତଗାଏ ।
ବଂଧୁ ତୁମେ ମୋର
ବଂଧନୁ ମୁକ୍ତ ତ
ବଂଧୁର ଜୀବନରେ
ନିରୋଳା ବଂଧୁତ୍ୱ
ମିଳେନା ବୋଲି ଏଠି

ନିରବେ ଏକୁଟିଆ
ବଂଧୁତ୍ୱର ପ୍ରତୀକ୍ଷା, ତମଠି କରେ ଯାହା ।
ପାଇବି ବୋଲି ଆଶା
ଦେବି ମୁଁ ତମକୁ ଯେ
ହୃଦୟ ମନ ମୋର
ବିଚରି ତମ ଭବେ
ସୃଚ୍ଛିବ ସୁଲୁ ସୁଲୁ
ମଳୟ ଶିହରଣ
ସବୁଜ ମନ ମୋର
ସବୁଜ ମନ ତମ
ନିଜର ହେବ ଦିନେ
ନିଜର ହେବା ଆମେ
ନିଜକୁ ହଜାଇ ଦେବା
ଚରମ ସଂଗ୍ରାମେ।
ମୁକ୍ତି ତୁମେ ଯେ ଚାହଁ
ମୁକ୍ତି ମୁଁ ବି ଚାହେଁ
ନଦେଖି ତମକୁ ବି
କବିତା ଲେଖୁଥାଏ ।
ଦେଖିବି ଯେଉଁ ଦିନ
ନିରବ ଆଖି ତମ
ଫେରାଇ ଦେବନି ତ
ସାଥୀ ମୋ ପ୍ରିୟତମ।
ସବୁଜ ବନାନୀରେ
ସବୁଜ ଏ ଜୀବନ
ସବୁଜ ହୋଇ ଉଠୁ
ସବୁଜିମାରେ ଆମ
ମମତା ମଧୁମୟ

ମଧୁର ମଧୁଗୀତି
ସ୍ୱରର ସ୍ୱପ୍ନଡୋଳି
ଫୁଟାଇ ନବରୀତି ।
ମନର ଦରପଣେ
ତମରି ଦରଶନ
ଇଚ୍ଛା ଉକୁଟି ଉଠେ
ଅପେକ୍ଷା କଲି ତମ-
ଆଗମନେ ଏ ମନ
ହେବ ଯେ ସୁରଭିତ
ତମର ଦରଶନେ
ତମରି ବଂଧୁତ୍ୱ
ଆଲୋକ ଦେଇ ମୋତେ
କରିବ ଆଲୋକିତ;
ଜୀବନେ ଏକାଂତରେ
ଗାଏ ମୁଁ ତମ ଗୀତ
ଆଲୋକ ଦେଇ ମୋତେ
କରିବ ଆଲୋକିତ ।



# ଇଚ୍ଛା ସ୍ୱପ୍ନ ସଂପର୍କର

ସ୍ୱପ୍ନରେ ଭାବି ନଥିଲି ପୁଣି ଥରେ
ତମ ସହଭେଟ ହେବ ବୋଲି
ହଠାତ୍ ଯେ ଭେଟ ହୋଇଗଲା
ବିନା ସର୍ତ୍ତରେ ବଂଧୁତାର ହାତ
ବଢାଇ ଦେଲ
ଏବେ ପରିପୂର୍ଣ୍ଣ ଜୀବନ ମୋର
ତମ ବଂଧୁତାରେ ।
ଅନାବିଳ ତମର ସ୍ନେହ ଓ
ଭଲ ପାଇବାରେ ମୁଁ ମୁଗ୍ଧ ।
ହୃଦୟ ମୋର ଫୁଲ ହୋଇ ଫୁଟିଛି
ତୁମେ ପ୍ରଜାପତି
ଅଂତରରୁ ମୋର ଆବେଗର
ମଧୁ ଝରୁଛି
ତୁମେ ଭ୍ରମର
ପବନରେ ବଂଶୀର ସ୍ୱର
ତୁମେ କୃଷ୍ଣ
ମୋତେ କେଉଁ ଦୂର ଇଲାକାକୁ
ନେଇଯାଅ

ଚରିତ୍ରରେ ମୋର କଳଂକ ବୋଳିଦିଅ
ଅନ୍ୟାୟର ସଂସାରରୁ
କଂସମାନଂକୁ ନିପାତକର
ମୁଁ ଅକୃର ବିପଦ ଆପଦରେ
ତମ ପାଖେ ଥିବି
ଜୀବନକୁ ସଲକ୍ଷ ମାର୍ଗରେ
ପରିଚାଳିତ କରିବି
ସ୍ନେହ-ଆବେଗର
ଅଭାବମୟ ସଂସାରରେ
ମୁଁ ସୁଦାମା
ଖୁଦଭଜା ଦେଇ ତୁମକୁ
ସଂତୁଷ୍ଟ ରଖିବି ।

କବିତାରେ ମୁଁ କଳ୍ପନାର
ଫସଲ ଉପୁଯାଏ
ଆଦର୍ଶଗତ ଭାବରେ
ମୁଁ ଦେଶ, ଜାତିକୁ ଭଲପାଏ
ନିପୀଡିତ ମଣିଷମାନଂକର
ସଂଗ୍ରାମରେ ଥାଏ
ମୋର ଏ ବଳକା ଆବେଗକୁ
ତମେ ସମ୍ମାନ ଦିଅ,
ସମର୍ଥନ ଜଣାଅ ।
ବେଳେବେଳେ ପ୍ରକୃତି
ସ୍ୱରୂପିଣୀ ହୋଇ
ତୁମେ ମୋ ସମ୍ମୁଖରେ
ଉଭା ହୁଅ
ମୋତେ ଭଲ ଲାଗେ

କି ସୁଂଦର ବୈଚିତ୍ର୍ୟମୟ ଏ ସଂସାର
କାହାକୁ କାହା ସହିତ
ଜୁଟାଇ ଦେଉଛି ସମୟ
କିଏ କାହା ସହିତ
ଯୋଡି ହୋଇ ଯାଉଛିତ
ପୁଣି କେଉଁଠି ଛିଡି ଯାଉଛି
ସଂପର୍କର ଡୋର ।

ତମେ ମୋତେ ମୋର ହେବ ବୋଲି କୁହ
ତମେ ମତେ ଗଭୀରରୁ ଗଭୀରତର ଭାବରେ
ଭଲପାଅ
ମୁଁ ବର୍ତ୍ତିକାଟିଏ ହୋଇଯିବି
ତମେ ପୃଥିବୀ
ହୋଇଯାଅ
ମୁଁ ସୂର୍ଯ୍ୟ ହୋଇ ପ୍ରକଟିବି ।
ଯୋଜନ ଯୋଜନ ଆକାଂକ୍ଷା
କୋଟି କୋଟି ଇଚ୍ଛା ସ୍ୱପ୍ନ
ଅଜସ୍ର ସ୍ନେହ ଭଲପାଇବା
ସବୁ କିଛିକୁ ଅଜାଡି ଦେଇଛି
ତମଠାରେ
ତମର ଶ୍ରଦ୍ଧା ଶୁଭେଚ୍ଛାକୁ ନେଇ
ଅବଶିଷ୍ଟ ଜୀବନ ଯାପିବି ।

ମୁଁ ମାଟି ହୋଇ ଯାଂତି କି
ତୁମେ ହୁଅଂତ ଗଛ
ମୁଁ ଗଛ ହୋଇ ଯାଂତିକି
ତୁମେ ପବନ

ପାହାଡ, ଝରଣା, ପକ୍ଷୀ... ।
ବିଦାୟବେଳେ ସେଦିନ ଲକ୍ଷ କଲି
ତମ ଆଖିରେ ଲୁହ
ତଥାପି ତମେ ବ୍ୟସ୍ତ ହୁଅନା
ମୋର ବିଶ୍ୱାସ
ସମୟ ଆମକୁ ସାଥ୍ ଦେବ
ଆମର ଇଚ୍ଛା ସ୍ୱପ୍ନ ଓ ସଂପର୍କ
ଦିନେ ସାକାର ହେବ ।
ବାସ୍ତବତାର ଅନିର୍ବଚନୀୟ
ସୌଂଦର୍ଯ୍ୟରେ
ଉଜ୍ଜଳି ଉଠିବା ଆମେ ।

# ମା'ପରି ତୁମେ ମୋର ବଂଧୁଟିଏ ହୁଅ

ମା' ପରି ତୁମେ ମୋର ବଂଧୁଟିଏ ହୁଅ
ନିସଂଗ ଏ ଜୀବନରେ ନିଆରା କିଛି ସ୍ୱପ୍ନକୁ
ସାଉଁଟି ନିଅ ;
ମୁଁ ତୁମର କେହି ନୁହେଁ
ପରିଚିତ ସଖା ଏକ (ଦୁଗ୍ଧ ପୋଷ୍ୟ ପୁଅ)
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ଶିଶୁ ସଂତାନ ତୁମର ବଡ ହୋଇ ଯାଇଛି
ତମେ ତାର ମଥା ସାଉଁଳାଇ ଦିଅ
ତା' ପ୍ରତି ସଖ୍ୟ ସଂପ୍ରୀତିର ହାତ ବଢ଼ାଇ ଦିଅ
ଆବେଗର ଭରା ନଈଟିଏ ହୁଅ;
ଏଇ ମୋର ନଡା ଛପରର ଘର ସରଳ ଜୀବନ
ଅନେକ ଦିନରୁ ଏଠି ନେଇଛି ଆଶ୍ରୟ
ଇଛା ହେଲେ ତମେ ଥରେ ମୋ ପାଶରେ ରୁହ
ମୋ ପରି ସାଧାରଣ ମଣିଷର ଜୀବନଟେ ଜିଅଁ
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ସମତାର ଦୁନିଆ ପାଇଁ
ମୁଁ ଉଦ୍ୟମ ରତ
ଜୀବନରେ ମୋର ଅଛି କିଛି

ସାଫଲ୍ୟ କିଛି ବ୍ୟର୍ଥତା
ସାମାଜିକ ସଂପର୍କର ଜୟ ପରାଜୟ
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ନାରୀ ମୁକ୍ତିରେ ବିଶ୍ୱାସ ରଖେ ଯେହେତୁ
ମୁଁ 'ପୁରୁଷ' ନୁହଁ
'ନାରୀ' ବି ନୁହଁ
ବିବର୍ତ୍ତିତ ସମୟର ପ୍ରେକ୍ଷାପଟ୍ଟରେ ମୁଁ
ନାରୀ ପୁରୁଷର ଅପୂର୍ବ ସମନ୍ୱୟ
ମା' ପରି ତୁମେ ମୋର ବଂଧୁଟିଏ ହୁଅ ।
ତୁମକୁ ନେଇ ମୁଁ ସ୍ୱପ୍ନ ଦେଖେ
ବେଳେ ବେଳେ ସ୍ୱପ୍ନରେ
ମୁଁ ତୁମର
ମଥା ସାଉଁଳେଇ ଦିଏ...
ମିଶାଇଦିଏ ତମ ହୃଦୟ ସହିତ ହୃଦୟ
ତମ ହାତଧରି ଚାଲିଯାଏ ବହୁଦୂର
କଟାଇବାକୁ ସମୟ
ମନେହୁଏ ସେତେବେଳେ
ଏ ନିଃସଂଗ ଜୀବନକୁ
ତମେଇ କରିଛ ସଂଗମୟ ।
ସମାଜର ତର୍ଜ୍ଜନୀ
ନୈତିକତାର ମଂତ୍ରଧ୍ୱନୀ
ଡରାଇପାରେ ତମକୁ
ଏସବୁକୁ କିଂତୁ
ଡରିବାର ନୁହଁ;
ଡରେନା ଯେହେତୁ ମୁଁ
ମୋ ଭିତରେ ଅଛି
ମୁକ୍ତ ମଣିଷର ଶଶକ୍ତ ହୃଦୟ

ପରାଧିନତା ବିପକ୍ଷରେ ଲଢୁଥିବା
ଲଢୁଆ ବ୍ୟକ୍ତିତ୍ୱର
ବୈପ୍ଳବିକ ଆତ୍ମ ପରିଚୟ;
ସାମାଜିକ ରଢିବାଦକୁ ଖତମ୍ କରୁଥିବା
ଉତପ୍ତ ଚେତନାର ଆଲୋକିତ ବିସ୍ମୟ ।
ମା ପରି ତୁମେ ମୋର ବଂଧୁଟିଏ ହୁଅ
ମୋ ହାତ ଉପରେ ହାତଥୁଅ
ଭଲ ପାଇବାର ଆବେଗରେ
ଉତ୍କଂଠିତ ରୁହ
ସ୍ନେହ ପ୍ରେମର ମହକରେ
ମହକିତ ହୋଇ
ସଂପର୍କକୁ ଆମର କରିଦିଅ
ଧୂପ ଗଂଧ-ମୟ ।
ମା ପରି ତୁମେ ମୋର ବଂଧୁଟିଏ ହୁଅ
ନିଜ ଉପରେ ନିଜେ ଆସ୍ଥାବାନ୍ ରୁହ
ନିପୀଡନର ଉର୍ଦ୍ଧ୍ୱକୁ ଉଠି
ନିଷିଦ୍ଧ ଫଳ ଖାଇବାର ପାପ ଭାବନାକୁ
ଅଗ୍ରାହ୍ୟ କରିଦିଅ;
ପରଂପରାର ଶିକୁଳି ଛିଡାଇ
ସାମାଜିକତାର ବଂଧନ ଏଡାଇ
ନୈତିକତାର ନିଗଡକୁ ଭାଂଗି
ତମେ ମୋର ହୋଇ ରୁହ
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ଅନେକ ଦିନରୁ ମୋ ହୃଦୟ ଭିତରେ, ମୁଁ ତମକୁ
ସାଇତି ରଖିଛି
ତମ ଅଜାଣତରେ ତମ ହୃଦୟ ଭିତରେ ମୁଁ
ନେଇ ସାରିଛି ଆଶ୍ରୟ

ତମ ପ୍ରତି ମୋର ନିଛକ ଏ ଭଲପାଇବାର
ସଂପର୍କକୁ ତମେ
ଜୀବନ୍ୟାସ ଦିଅ;
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ଏମିତି ହୋଇପାରେ
ମୋ ବ୍ୟତିତ ତମେ ହୋଇପାର
ଅନ୍ୟ କାହାର ବି;
ତମେ ଅନ୍ୟ ଯାହାର ହୁଅପଛେ
ମୋର ବି ହୁଅ;
ମୋ ଉପରେ ତମର
ଅଧିକାରକୁ ସାବ୍ୟସ୍ତ କରାଇ ନିଅ
ତମ ଉପରେ ମୋର ଅଧିକାରକୁ
ସାବ୍ୟସ୍ତ କରିବାକୁ ଦିଅ
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ମୁଁ ଥିବିସ୍ ରାଜ୍ୟର ରାଜା ଏଡ଼ିପସ୍ ନୁହଁ
ଯିଏ ତାର ବାପାକୁ ମାରି
ମାକୁ ବାହା ହେବ ଓ
ମାକୁ ବାହା ହେବାର ପାପରୁ ମୁକ୍ତିପାଇଁ
ନିଜ ହାତରେ ନିଜ ଆଖି ଫୁଟାଇ
କନ୍ୟା ପ୍ରତି ଆଶକ୍ତ ରହିବ ।*
ମା ପରି ତୁମେ ମୋର ବଂଧୁଟିଏ ହୁଅ ।
ପ୍ରକୃତିଠାରୁ ତମକୁ ଦୂରେ ଦେଇଥିବା
ସମାଜ ବଂଧନର
ଲକ୍ଷ୍ମଣ ରେଖାକୁ ଡେଇଁ
ନିଜ ଭିତରେ ତମେ ସୃଷ୍ଟିକର
ନିଜ ପରିଚୟ
ବିକଶି ଉଠୁ ତମ ଭିତରେ

ମାନବୀୟ ବ୍ୟକ୍ତିତ୍ୱର
ଚେତନା ନିଚୟ ।
ତମ ସହ ମୋର ଏ ସଂପର୍କ ଓ ବଂଧୁତା
ପ୍ରେମ ପ୍ରକୃତିର ଅପୂର୍ବ ସମନ୍ୱୟ ।
ମାପରି ତୁମେ ମୋର ବଂଧୁଟିଏ ହୁଅ
ନିଆରା କିଛି ସ୍ୱପ୍ନକୁ ସାଉଁଟି ନିଅ
ତୁମେ ଅନ୍ୟ ଯାହାର ହୁଅ ପଛେ
ମୋର ବି ହୁଅ ।

*\ *(ଗ୍ରୀକ୍ ନାଟ୍ୟକାର ସୋଫୋ କ୍ଲିସଂକ 'ଏଡିପସ ଦି କିଂଗ' ନାଟକର କାହାଣୀକୁ ଲକ୍ଷ୍ୟ କରି ।)*



# ନିଜସ୍ୱ ଇଚ୍ଛାର ପରିଧି

ମୋ ନିଜସ୍ୱ କ୍ଷୋଭ
ମୋତେ ହାତ ଠାରି ଡାକେ
ମୋ ଛାତି ତଳର ବ୍ୟଥା
ଜ୍ୱଳଂତ ବିପ୍ଳବ ।
ମୋ ବିବେକ ମୋ ମୃତ୍ୟୁର
ଅମୃତ ମଣୋହି
ଆକାଂକ୍ଷାର ବହମାନ ନଦୀ
ଅଭାବ ଓ ଦୁଃଖ ଶୋକ
ଜୀବନ ଅବଧି;
ବାଷ୍ପ ଆଉ ସ୍ୱେଦ
ନିରବ ଆଖିର ଅଶ୍ରୁ
ମୋ ଦେଶର ପୁତ୍ର କନ୍ୟା
ମୋ ମାଟି ଶୈଶବ;
ତା' ସରଳ ଓଠ
ତା' ଛାତି ତଳର ବ୍ୟଥା
ଅଂକାବଂକା ପଥ ।
ଏକାକୀ ମେଲାଣି
ଘୂର୍ଣ୍ଣନର ଝଡେ

ମୁଁ ଯେ ନିପୀଡିତ ଯେଣୁ
ତୋଳି ଧରି ପ୍ରଣୟର କଢ଼େ
ଯିବି ଅଗ୍ରଭାଗେ
ଡାକେ ପୂର୍ଣ୍ଣନଭ
ଆଶାର ସଂଚାର ଆଣେ
ଫେରିଆସେ ମନର ବୈଭବ ।

■■

# ନିରବ ସାଥୀ

ଅୟୁତ ଦିନର ଅୟୁତ ସପନ
ଜାଗେ ମୋ ମନେ
ଜୀବନ ରଣେ.....
ଭଲ ପାଇବାର ଋଣ ମୁଁ ଶୁଝୁଚି
ତୁମରି ଠାରେ
ଅୟୁତ ବାରେ....।
ତମେ କୁହ ଭଲା କାହିଁକି ଉଦାସ
ନିରବ କିଆଁ
କାନ୍ଦେ ମୋ ହିୟା,
ବରଷକେ ତଳେ
ସେ ଯେଉଁ ସପନ ଶପଥ ମାନ
ନିଆବା ଗଲା
କୁଆଡ଼େ ଗଲା ?
ପରିଣତି ତାର ପରାଜୟ ନୁହଁ
ଜାଣି ମୁଁ ଅଛି
କିନ୍ତୁ କାହିଁକି ଉଏଁନା ଶଶି !
ସମୟ କହୁଛି ଶପଥ ସବୁକୁ ସ୍ୱପ୍ନ ପରି
ଭୁଲି ଯେ ନଯାଅ ନଦିଅ ସାରି ।

ଶପଥ ଥିଲେ ତ ସ୍ୱପ୍ନ ଅଛି
ସ୍ୱପ୍ନ ଅଛି ତ, ଜୀବନ ଅଛି ।
ଜୀବନ ତମର ଜୀବନ ମୋର
ଫେରାଇ ଦିଅ
ନିରବ ସାଥୀ
ନିରବତା ମଧ୍ୟେ ଜୀବନ ଅଛି ।

# ରକ୍ତ କରବୀ ମୋର

ଆଖିପତା ତମ ହଲିଗଲା ବେଳେ
ସ୍ପନ୍ଦନ ଯାଏ ଖେଳି ମୋ
ତମ ଛାତି ତଳେ ଅକୁହା ଭାଷାକୁ
ବୁଝି ଦେଲି ସିନା କାଲି ଗୋ
ତମେ କୁହ ଏବେ ବିପଦ କେଉଁଠି
ମୁକ୍ତ ହେବାରେ ଏମନ
ତମେ କୁହ ଏବେ କାହିଁକି ଦିନେ ଯେ
ସ୍ୱପ୍ନ ନହେବ ସୁମନ ।
ତମେ କୁହ ଏବେ ସଂପର୍କ ସୁତା-
ଛିଡ଼ିବ ନାହିଁ କି ବଂଧୁ ମୋ'
ନାରୀ ପୁରୁଷର ବିଭେଦକୁ ଡେଇଁ
ଗୁଡ଼ି ଉଡ଼ିବଟି ଆକାଶେ
ହାତେ ରଖିଦିଅ ହାତ ମୋ
କଥା କହିଯାଅ ଗୁଳିବି ଫୁଟାଅ
ବଦଳାଅ ଯାହା ପୁରୁଣା
ସ୍ୱପ୍ନେ ରଚିତା' ନମୁନା
ପହଁରିବି ମୁଇଁ ସେଠାରେ
ତମରି ସ୍ମୃତିର ଯମୁନା,

କୁଳୁ, କୁଳୁ ହୋଇ
ବହିଯାଉଥିବ ଯେଠାରେ;
ତାରି ସ୍ରୋତରେ ଭାଷି ନଯାଇ ମୁଁ
ବାଇବି ମୋ ନାବ ସେଇଠି
ଅନୁଭୂତିମୟ ସୁନାର ଫସଲ ଯେଉଁଠି
ସ୍ୱପ୍ନ ରଚିବି ସେଇଠି ;
ତମେ ହୁଅ ମୋର ପ୍ରେରଣା
ସ୍ୱପ୍ନେ ଗଢ଼ିବି ପ୍ରତିମା ।
ସଂଘର୍ଷମୟ ଭାଷା ଯେ ମୋ'ର
ଫୁଲ ହୋଇ ଦେବ ସୁରଭି
ତମେ ହୁଅ ତା'ର ଅସଲି ସାଥୀ ମୋ
ଚେତନା ରକ୍ତ କରବୀ ।।



# ଗୀତଟିଏ କଥାଟିଏ

ତମ କଥା ଭାବି ଭାବି ନିଦ ହୁଏନା
ନିରବରେ କାନ୍ଦି ଉଠେ ମନ ମଇନା
ତମକଥା ଭାବି ଭାବି ନିଦ ହୁଏନା ।
ଭାବନାର ବାରିଧାରା ଏମୋ ଜୀବନ
ତମେ ଯେବେ ଦେଖାଦିଅ ଶରଦ ଜହ୍ନ
ଜହ୍ନ କାନ୍ଦେ କଇଁ କଇଁ ତାରା ବି କାନ୍ଦେ
ଭଲପାଇ ଭୁଲିଯାଅ ମୁଁ ଭୁଲେନା ।
ତମ କଥା ଭାବିଭାବି ନିଦ ହୁଏନା
ନିରବରେ କାନ୍ଦି ଉଠେ ମନ ମଇନା ।।
ତମକଥା ଭାବି ଭାବି ରାତି ପାହେନା
ରାତିକୁ ଯେ କଥା ଦେଇ ତମେ ଆସନା ।
ତମ କଥା ଭାବି ଭାବି ନିଦ ହୁଏନା
ନିରବରେ କାନ୍ଦି ଉଠେ ମନ ମଇନା ।।
ଭଲପାଇ ଭୟକର ଏ କି ବାହାନା
ଭଲ ପାଇ ଚୁପ୍ ରହ ଏ କି ଛଳନା
ତମକଥା ଭାବି ଭାବି ନିଦ ହୁଏନା
ନିରବରେ କାନ୍ଦି ଉଠେ ମନ ମଇନା
ତମକଥା ଭାବି ଭାବି ଶୋଇ ପାରେନା

ତମକଥା ଭାବି ଭାବି ଖାଇ ପାରେନା
ତମ କଥା ଭାବି ଭାବି ନିଦ ହୁଏନା
ନିରବରେ କାନ୍ଦି ଉଠେ ମନ ମଇନା
ତମକଥା ଭାବି ଭାବି ନିଦ ହୁଏନା ।



## ଜୀବନକୁ ଭଲପାଅ

ଟୋପାଏ ଲୁହ ଦେଖି ତମ ଆଖିରେ
ଆଞ୍ଜୁଳାଏ ସ୍ନେହ ଅଜାଡ଼ି ଦେଇଥିଲି
ସବୁଜିମାରେ ଭରିଗଲା ତମର ମନ
ଏବେ ଦେଖୁଛି ତମେ କାବ୍ୟମୟ ହୋଇ ଉଠିଛ
ଶବ୍ଦରେ ତରଙ୍ଗ ସୃଷ୍ଟି କରିଛ।
ତମର କବିତା କେବଳ ଯେ ମୋତେ
ମୁଗ୍ଧ କରିଛି ତା' ନୁହଁ
ଅନୁରାଗରେ ସିକ୍ତ କରାଇଛି
ଆନନ୍ଦରେ ଅଧିର ହୋଇଯାଇଛି ମୁଁ
ବିଭୋର ହୋଇଛି
ତମ ସହ ସଂପର୍କକୁ ସାର୍ଥକ ମଣୁଛି ।
ତମେ ଏବେ ପାଦପଟିଏ ହୋଇ
ମୁଣ୍ଡ ଟେକିଛ ମୋ ବଗିଚାରେ
ମୁଁ ମାଳିଟିଏ ପରି ତମର ଯତ୍ନ ନେଉଛି
ଫୁଲଟିଏ ହୋଇ ଫୁଟିଛ ମୋ ଅଗଣାରେ
ମୁଁ ତମକୁ ପବନରେ ଦୋହଲାଇ ଦେଉଛି
ଆହ୍ଲାଦରେ ସ୍ନେହରେ ତମ ମଥା ସାଉଁଳାଉଛି।
ତମେ ଆୟୁସ୍ମତି ହୁଅ, ଯଶସ୍ୱୀ ହୁଅ

ହୃଦୟର ଗଭୀରତମ ପ୍ରଦେଶରୁ ମୋର ସ୍ନେହନିଅ
ଭଲପାଇବା ନିଅ;
ଆଜିଠାରୁ ଅଧିକରୁ ଅଧିକତର ଭାବରେ
ସୃଜନଶୀଳତାରେ ଭରିଯାଅ
ସ୍ୱାଧୀନ ହୁଅ ମୁକ୍ତ ହୁଅ
ଦେଶ ଜାତି, ଭାଷା ଓ ମଣିଷ ଠାରେ ମନଦିଅ
ଶକ୍ତ ଜୀବନଟେ ଜିଅ।
ତମେ ଏକା ନୁହଁ
ଅନେକ ଅନେକ ଅଛନ୍ତି ତମ ସାଥୀରେ
ମୁଁବି ଅଛି।
ମୋ ପାଇଁ ତମେ ପ୍ରତ୍ୟୟର ବୀଜଟିଏ ହୁଅ
ଭଲପାଇବାର ମନ୍ତ୍ରଟିଏ ହୁଅ
ମୋର ସ୍ନେହାଶିଷ ନିଅ
ମୋ କଣ୍ଠ ସହିତ କଣ୍ଠ ମିଳାଇ କୁହ
ତମେ ଜୀବନକୁ ଭଲପାଅ
ଯାହା ତମେ କହିସାରିଛ ତମ କବିତାରେ
ତାକୁ ଆଉଥରେ କୁହ।।

■■

# କେବଳ ସଂପର୍କହୀନତାକୁ ଛାଡ଼ି

ଅସହ୍ୟ ଦୁଃଖରେ
କାନ୍ଦି ଉଠୁଥିଲା ବେଳେ
ତମେ ମନେ ପଡ଼ିଗଲ
ମାତ୍ର କେଇଦିନ ତଳେ
ତମ ସହ ସାକ୍ଷାତ
ଏତେ ମାୟା ଲାଗିଗଲା ସତେ !
ତମ କଥା ଭାବିଲା ବେଳେ
ମନେ ହେଉଛି
ସତରେ ବିଚିତ୍ର ଏ ଦୁନିଆ
କିଏ ବା କାର ନୁହଁ !
ମୁଁ ସୁଖର ସାଥୀ ହେବାକୁ ଚାହେଁନା
ତମ ସହ
ସୁଖ ଦୁଃଖ ଉଭୟର
ସାଥୀ ହେବାକୁ ଚାହେଁ ।
ଜାଣେନା, ମୁଁ ଯେଉଁ ସ୍ୱପ୍ନର
ବୀଜ ବୁଣିଛି
ତମ ଭବିଷ୍ୟତକୁ ନେଇ
ତାକୁ ସାକାର କରିବାରେ

କେତେ ଟିକେ ବା ସହାୟ ହୋଇ ପାରିବ ତମେ
ଏସବୁ କଥା ଭାବିଲା ବେଳେ
ସନ୍ଦିଗ୍ଧ ହୋଇ ଉଠେ ମନ;
ତମସହ ଅଙ୍କ କେଇଦିନ ତଳର
ଭାବ ବିନିମୟର ମୁହୂର୍ତ୍ତମାନ
ମନେ ପଡ଼ି ଯାଉଛି;
ଭୁଲି ପାରୁନି ସେଇ ମୁହୂର୍ତ୍ତମାନଙ୍କୁ
ଯେଉଁ ମୁହୂର୍ତ୍ତରେ ତମକୁ ନିଜର ବୋଲି
ଭାବି ନେଇଛି
ସେଇ ମୁହୂର୍ତ୍ତମାନଙ୍କ ଠାରୁ
ଦୂରେଇ ଯାଇ ପାରୁନି;
ଭାବୁଛି, ସେଠାରୁ
ଦୂରେଇ ଯିବାର ଅର୍ଥ
ସଂପର୍କହୀନତାରେ
ଶୂନ୍ୟ ହୋଇଯିବା ।
ସବୁକିଛି ଘଟିଯାଉ
ଏ ଜୀବନରେ
କେବଳ ତମସହ
ସଂପର୍କହୀନତାକୁ ଛାଡ଼ି ।

# ମୁଁ ଏକୁଟିଆ

ଇଚ୍ଛା ଥାଉ ବା ନଥାଉ
ବେଳେବେଳେ କେହି ଜଣେ
ମୋ ଭିତରକୁ ପଶିଆସେ
ନିଜର ପରି ଲାଗେ
କିଂତୁ ହାତ ବଢ଼ାଇବା ମାତ୍ରେ
ସେ ମୋ ପାଇଁ ଅପହଂଚ ରହେ ।
ସେ ମୋ'ର କେହି ନୁହଁ
ଅଥଚ ସବୁକିଛି
ତାକୁ ମୁଁ ନିଜର ବୋଲି ଭାବିଲା ବେଳେ
ମୋ ଭିତରୁ ଗୋଟାଏ କଥା
ମୁଁ ଶୁଣିବାକୁ ପାଏ
ତାହା ହେଲା ବିନା ତ୍ୟାଗ ଓ ଦୃଢ଼ତା ବିନା
କାହାକୁ ନିଜର କରି ହୁଏନା
ଆଉ ନିଜର ପରି ନଲାଗିଲେ
କେହି ନିଜର ହୁଏନା ।
ବେଳେବେଳେ ଭାବେ
ଜୀବନ ସଂପର୍କରେ ଏତେ ଅଧିକା ଉତ୍ସାହ
ଓ ବିହ୍ୱଳ ଭାବ କାହିଁକି ?

ମୁଁ କ'ଣ ମୋର ନୁହଁ ଯେ
ମୋ ଭିତରେ ଆଉଜଣକୁ ଖୋଜୁଥାଏ ?
ଏସବୁ ଚିଂତା ମୁଂଡରେ ପଶିଲେ
ଏକାକୀତ୍ୱବୋଧର ଯଂତ୍ରଣା
ମୋତେ ମାଡ଼ିବସେ
ମୋର ନିଜର ହୋଇ
ଅନେକ କେହି ଥାଇବି
କେହି ନଥିଲା ପରି ମନେହୁଏ
ମୁଁ ତାକୁଇ ଋହେଁ ଯାହାକୁ
ମୁଁ ଅପେକ୍ଷା କରିଥାଏ
ଯାହାକୁ ମୁଁ ଭଲପାଏ
ଯାହାର ଅଭାବରେ ମୋତେ
ଜୀବନରେ ସବୁ ଥାଇ ବି
କିଛି ନଥିଲା ପରି ମନେହୁଏ ।

ଯାହାକୁ ମୁଁ ପାଇବାକୁ ଋହୁଁଛି
ସେ ଯେ ମୋ ଭିତରେ ଅଛି
ବାରଂବାର ମୋଠାରୁ ଦୂରେଇ ଯାଇ
ମୋତେ ଏକୁଟିଆ କରିଦିଏ ।।

ସବୁତ ମିଳାଇଗଲା
ଶତାବ୍ଦୀର ସ୍ଥିର ଗଭୀରତା
ମଧ୍ଯ ଯାହା ଅବଶେଷ
ତମଠାରୁ ମୋର ବିଚ୍ଛିନ୍ନତା
ସ୍ମୃତି ଆଣେ କେବଳ ଯେ ସ୍ମୃତି
ତମକୁ ହରାଇବାରେ
ଭାବିଥିଲି ଜୀବନର ଗତି
ବଂଦ ହୋଇଯିବ;
ହେଲା ନାହିଁ ଯେଣୁ
ଏବେ କିଂତୁ ନୀଡହରା ପକ୍ଷୀ ମୁଁ ଯେ
ଖୋଜେ ଏଣୁ ତେଣୁ
କିଛିଇତ ମିଳେନାହିଁ
ମିଳେ ଯାହା ସୁଦୂର ଅତୀତ
ଯେଉଁଠି ତମକୁ ନେଇ ଗାଇଥିଲି
ବଂଚିବାର ଗୀତ
ଗଛେ, ଡାଳେ, ପବନେ, ପତରେ
ଆକାଶେ ଓ ମେଘେ
ଜଳବାୟୁ ଉତାପର ସମ୍ମିଳିତ ବେଗେ
ଚିନ୍ମୟ ଆନନ୍ଦେ ।
ସେଇ ଧ୍ଵନୀ ସେଇ ଛଂଦ
କରିଥିଲା ଦିନେ ଆତ୍ମହରା
ବ୍ୟଥା ଭରା ହୃଦୟରେ
ଭାବିଥିଲି ବିରହ ବିଧୂରା
ଧ୍ରୁବଭଳି ସତ୍ୟ ଯାହା ମଣିଥିଲି
ଇଂଦ୍ରଧନୁ ପରି ସେ ସଂପର୍କ
କେଉଁଠି ମିଳାଇ ଗଲା
ଆଜି ଦେଖେ ଆକାଶ ନିର୍ମୋକ ।

**(ଜାଣେ ମୁଇଁ ଜାଣେ)**

(କଲମ୍ବସ୍ ଭାବନା)

ସାଫଲ୍ୟ ଯେତିକି ସତ୍ୟ
ବ୍ୟର୍ଥତା ଯେ ତତୋଧିକ ସତ୍ୟ
ତମକୁ ପାଇବା ଓ ହରାଇବା
ସବୁର ମହତ୍
ଅଛି ଏଠି ଯେଣୁ
ସତେଜ ଏ ଦେହସତ୍ତା
ଲହରିତ ହୃଦୟର ବେଣୁ
ପ୍ରାଣବନ୍ତ କବିତା ଉଦ୍ୟାନ
ଅଧିକ ଘନିଷ୍ଠ ଭାବେ
ମୋ ସତ୍ତାକୁ କରେ ମୋହାଛନ୍ନ ।

(କଲମ୍ବସ୍ ଭାବନା)